# ପଲ୍ଲୀକବି ନନ୍ଦକିଶୋର



ହେ ନନ୍ଦକିଶୋର ସର୍ବ ଗୁଣରେ ନିପୁଣ
ଗାଇବାକୁ ତୁମ୍ଭ ଯଶ ନାହିଁ ମୋର ଗୁଣ

× × ×

ଅକାଳରେ ଦେହ ଛାଡ଼ି ଚାଲିଗଲ ଭାଇ
ଜାତି ବନ୍ଧୁ ଅନୁଗତ ଲୋକଙ୍କୁ କନ୍ଦାଇ

—ଫକୀରମୋହନ

---

# ପଲ୍ଲୀକବି ନନ୍ଦକିଶୋର

ଲେଖକ : **ସତ୍ୟନାରାୟଣ ମହାପାତ୍ର** ଏମ୍. ଏ.

---

ପ୍ରକାଶକ : ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ
ବିନୋଦ ବିହାରୀ, କଟକ - ୨

୧୯୭୮ ମୂଲ୍ୟ : ଟ ୧·୭୫

# ସୂଚୀ



[ This book has been printed on paper made available by the Government of India through Government of Orissa at Concessional rate. ]

# ଜନ୍ମମାଟିର ମାୟା

"ବର୍ତ୍ତମାନ ବୈଦେଶିକ ଭାଷାର ପ୍ରବଳ ସ୍ରୋତ ମାଡ଼ି ଆସୁଅଛି । ଓଡ଼ିଆ ଅସଭ୍ୟ, ଭୀରୁ, ବେହେଲା, ମେଣ୍ଢା ଓଡ଼ିଆ—ସେ ସ୍ରୋତରେ ଭସିଯାଉଅଛି । ହେ ଜାତିପତି ପ୍ରଭୋ, ଜାତିସୂତା ଛଡ଼ାଇ ନେବାର ଯେବେ ଇଚ୍ଛାଥିଲା ତେବେ ଏ ରତ୍ନ ଦେଇଥିଲ କାହିଁକି ?" ନନ୍ଦକିଶୋର ତାହାଙ୍କ ବାଲ୍ୟକାଳରେ ଚଟ୍ଟଶାଳୀରେ ପାଇଥିବା ପ୍ରାଥମିକ ଶିକ୍ଷାପ୍ରଣାଳୀର ଧାରା ସ୍ମରଣ କରି ଏକପ୍ରକାର ନୈରାଶ୍ୟଭାବ ପୋଷଣ କରିଥିଲେ ଉତ୍ତର ଜୀବନରେ । ପ୍ରାଥମିକ ଶିକ୍ଷାପଦ୍ଧତିର ସେ ପ୍ରକାର ପରିବର୍ତ୍ତନ ପାଇଁ ସେ ଦାୟୀ କରିଥିଲେ ବିଶ୍ୱନିୟନ୍ତା ଭଗବାନଙ୍କୁ କେବଳ ।

ପଲ୍ଲୀକବି ନନ୍ଦକିଶୋର ଅନୁଭବ କରିଥିଲେ ବୈଦେଶିକ ଭାଷାର ପ୍ରବଳ ସୁଅ ଏ ଦେଶ ପିଠିରେ ବହିଯିବାରେ ଲାଗିଛି ଓ ସେହି ସୁଅରେ ଆମ ଜାତୀୟ ଭାଷା ଏବଂ ତା ଫଳରେ ଅନେକାଂଶରେ ଆମ ଜାତିସୂତା ମଧ୍ୟ ସେଥି ସହିତ ମିଶି କେଉଁ ଏକ ଅଜଣା ସାଗରରେ ଲୀନ ହୋଇଯାଉଥିଲା । ସେଥିରୁ ନିଜକୁ ଉଦ୍ଧାର କରି ହେଉ ନ ଥିଲା । ସେ ସୁବର୍ଣ୍ଣ, ଅବିସ୍ମରଣୀୟ ଅତୀତ ଆଉ ଫେରି ଆସିବାର ଆଶା ସେ ଦେଖିପାରୁ ନ ଥିଲେ । ସେଥିପାଇଁ ବ୍ୟଥିତ

ହୋଇ ଉଠିଥିଲେ ସେ । ସ୍ରଷ୍ଟାଙ୍କ ନିକଟରେ ଅଭିଯୋଗ କରିଥିଲେ "ସେ ସ୍ରୋତ କେଉଁ ବିଧିବିଡ଼ମ୍ବନାରେ ବନ୍ଦହେଲା । ସେଦିନ ଚିରକାଳ ପାଇଁ ଅସ୍ତମିତ ହେଲା । ଆଜି କି କେବେ ସେ ଦିନ ଫେରିବ ନାହିଁ ?"

ନନ୍ଦକିଶୋର ୧୮୭୫ ମସିହା ଡିସେମ୍ବର ୨୨ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ । ଓଡ଼ିଆ ପଞ୍ଜିକା ଅନୁଯାୟୀ ସେ ଶୁଭଦିନ ଥିଲା ୧୨୮୩ ସାଲ ପୌଷ ୯ ଦିନ ବୁଧବାର କୃଷ୍ଣପକ୍ଷ ଏକାଦଶୀ ତିଥି । ଜନ୍ମସ୍ଥାନ କଟକ ଜିଲ୍ଲାର କୁସୁପୁର ।

କୁସୁପୁର ଗ୍ରାମର ଅବସ୍ଥିତି ବିରୂପା ନଦୀର ପୂର୍ବ ଉପକୂଳରେ । ନଦୀର ଉତ୍ତର ଦିଗରେ ଏବଂ ଗ୍ରାମର ଅଦୂରରେ ଅବସ୍ଥିତ ଆରଣ୍ଡଗିରି ଓ ଉଦୟଗିରି ପର୍ବତମାଳା । ନଦୀର ଅପର ପାର୍ଶ୍ୱରେ ଗ୍ରାମର ପୂର୍ବପଟରେ ଐତିହାସିକ ଲଳିତଗିରି ଏବଂ କାବ୍ୟିକ ପରିବେଶ ସୃଷ୍ଟିକରି ଅସଂଖ୍ୟ ଚନ୍ଦନ ବନ । ଗ୍ରାମର ଦକ୍ଷିଣ ଦିଗରେ ପଞ୍ଚାମୁଣ୍ଡାଇ କେନାଲ । ଏକ ନିକାଞ୍ଚନ ପରିବେଶ । ପ୍ରାକୃତିକ ଶୋଭାସଂପଦରେ ପରିପୂର୍ଣ୍ଣ କୁସୁପୁର ହୁଏତ ଏହାହିଁ ଏକ ଗୁରୁତ୍ୱପୂର୍ଣ୍ଣ କାରଣ ହୋଇପାରେ ଯେଉଁଥିପାଇଁ ଭାରତର ପ୍ରଖ୍ୟାତନାମା ଔପନ୍ୟାସିକ ବଙ୍କିମଚନ୍ଦ୍ର ତାଙ୍କର 'ସୀତାରାମ' ଉପନ୍ୟାସର ଏକ ଅଞ୍ଚଳର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଥିଲେ ଏକ ଔପନ୍ୟାସିକ ଉଚ୍ଛ୍ୱାସରେ ।

ନନ୍ଦକିଶୋରଙ୍କ ପିତାଙ୍କ ନାମ ଥିଲା ଭଜନାନନ୍ଦ ଜେନା ଓ ମାତାଙ୍କ ନାମ ଥିଲା ହିରଣ୍ମୟୀ ଦେବୀ । ନନ୍ଦକିଶୋର ଭୂମିଷ୍ଠ ହେବା ପୂର୍ବରୁ ଭଜନାନନ୍ଦ ତିନୋଟି ସନ୍ତାନର ଜନକ ହୋଇ ସାରିଥିଲେ । ସେମାନଙ୍କ ନାମକରଣ କରାଯାଇଥିଲା ଦୟାନିଧି, ନରହରି ଓ ନିତ୍ୟାନନ୍ଦ । ଭାଗ୍ୟର ବିଡ଼ମ୍ବନା, ହିରଣ୍ମୟୀ ଦେବୀ ତାଙ୍କର ଚତୁର୍ଥ

ପୁତ୍ର ନନ୍ଦକିଶୋରର ମାତୃସ୍ନେହଲାଭ କରିବାର ଅଳ୍ପକାଳ ମଧ୍ୟରେ ଏ ସ୍ୱର୍ଗୀୟ ଆଲୋକ ସହ୍ୟ କରିପାରି ନ ଥିଲେ । ଇହଧାମ ତ୍ୟାଗ କରିଥିଲେ ବାଳୁତ ଚତୁର୍ଥ ସନ୍ତାନକୁ ସେଇ ସ୍ୱର୍ଗୀୟ ଆଲୋକକୁ ଆପଣାର କରିବାକୁ ଦେଇ ।

ଭଜନାନନ୍ଦଙ୍କ ଭଉଣୀ ଜାନକୀ ଦେବୀ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ ନନ୍ଦକିଶୋରଙ୍କୁ ।

ଜାନକୀ ଦେବୀଙ୍କ ପୋଷ୍ୟପୁତ୍ର ହେବା ପରେ ପରେ ତାହାଙ୍କ କୌଳିକ 'ଜେନା' ସଂଜ୍ଞାକୁ ତ୍ୟାଗ କରିଥିଲେ ଓ ଆଜି ଓଡ଼ିଶାର ପ୍ରତିପଲ୍ଲୀରେ ପରିଚିତ ହୁଇଟି ଅକ୍ଷର 'ବଳ' ଯୋଡ଼ି ଦେଇଥିଲେ 'ନନ୍ଦକିଶୋରଙ୍କ' ପରେ ପରେ ।

କବି ବାଲ୍ୟକାଳରେ ପୋଷ୍ୟପୁତ୍ର ରୂପେ ଗୃହୀତ ହେବା ପରେ ପରେ ତାଙ୍କ ପିଉସୀ ଜାନକୀ ଦେବୀଙ୍କ ଗୃହରେ ରହିବା କଥା । ଜାନକୀ ଦେବୀ କୁସୁପୁର ଠାରୁ ପ୍ରାୟ ଆଠ କିଲୋମିଟର ଦୂରବର୍ତ୍ତୀ ଆଲମଗିର ଗଡ଼ର ବଳବଂଶୀୟ ଜମିଦାରଙ୍କ ଗୃହବଧୂ ଥିଲେ । କିନ୍ତୁ ଜନ୍ମର ସମ୍ପର୍କ, ଭାଇମାନଙ୍କ ଆକର୍ଷଣ, ଜନ୍ମଭୂମିର ମମତା, ପିତାଙ୍କ ସ୍ନେହ ନନ୍ଦକିଶୋରଙ୍କୁ ଖୁବ୍ ଆକର୍ଷଣ କରି ରଖିଥିଲା । ତେଣୁ ପ୍ରାୟତଃ ସେ କୁସୁପୁରରେ ହିଁ ଅବସ୍ଥାନ କରୁଥିଲେ । ଦତ୍ତପୁତ୍ର ହୋଇଥିବାରୁ ପିଉସୀ ଆଲମଗିର ଗଡ଼କୁ ବାରମ୍ବାର ଯିବାଆସିବା କରିବା ମଧ୍ୟ ସ୍ୱାଭାବିକ ଥିଲା । ତେଣୁ ପିଉସୀ ଜାନକୀ ଦେବୀଙ୍କ ମୃତ୍ୟୁ ପରେ ପରେ ପଲ୍ଲୀକବି ନନ୍ଦକିଶୋର ସ୍ଥିର କରିଥିଲେ ତାଙ୍କର ପ୍ରିୟ ଜନ୍ମଭୂମି, ପ୍ରିୟ ଜନ୍ମମାଟି ସେଇ କୁସୁପୁରରେ ହିଁ ଜୀବନଦୀପ ନିର୍ବାପିତ କରିବେ । ନିଜ ଭାଇମାନଙ୍କ ସହିତ ଏକାଠି ସାରାଜୀବନ ବିତାଇବେ । ତାହାହିଁ ହୋଇଥିଲା ।

ସ୍ଥାୟୀଭାବରେ ବସା ବାନ୍ଧିଥିଲେ କୁସୁପୁରରେ । ଜନ୍ମଭୂମିକୁ ମହାତୀର୍ଥ ଭୂମି ମନେ କରିଥିଲେ ସେ । ସେଥିପାଇଁ ୧୯୬୮ ମସିହା ଜୁଲାଇ ମାସରେ ବହୁମୂତ୍ର ରୋଗାକ୍ରାନ୍ତ ହୋଇ ଶଯ୍ୟାଶାୟୀ ହୋଇ ପଡ଼ିବାରୁ ତାହାଙ୍କୁ ଯେତେବେଳେ କଟକ ବଡ଼ଡାକ୍ତର ଖାନାକୁ ଚିକିତ୍ସା ଲାଗି ଅଣାଯିବାର ବ୍ୟବସ୍ଥା କରାଗଲା, ସେଥିପାଇଁ ସେ ନିଜର ଅନିଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ତାଙ୍କର ଶୁଭାକାଂକ୍ଷୀ ତଥା ପରିବାରର ଲୋକମାନେ ସେମାନଙ୍କ ନିଷ୍ପତ୍ତି ଅଟଳ ରଖିଥିଲେ । ପୀଡ଼ିତ କବିଙ୍କୁ ଘରୁ ସବାରୀକୁ ଉଠାଇ ନିଆଗଲା ବେଳେ ଅତି ବିକଳ ହୋଇ ସେ ଅନୁରୋଧ କରିଥିଲେ "Let me die peacefully at my native village" । ମତେ ମୋର ଜନ୍ମ-ମାଟିରେ ଶାନ୍ତିରେ ମରିବାକୁ ଦିଅ – ଏ ଆକୁଳ ପ୍ରାର୍ଥନା ପ୍ରତି କେହି କର୍ଣ୍ଣପାତ କରି ନ ଥିଲେ । ସେ ନିଶ୍ଚିତଭାବେ ଜାଣିଥିଲେ ଯେ, ବହୁମୂତ୍ର ରୋଗରୁ ସେ ଆଉ ମୁକ୍ତି ଲାଭକରି ପାରିବେ ନାହିଁ । ମୃତ୍ୟୁ ତାଙ୍କ ଲାଗି ନିଶ୍ଚିତ । ତେଣୁ ସେ ଆକୁଳ ଅନୁରୋଧ କରିଥିଲେ ଜନ୍ମମାଟିରେ ହିଁ ତାଙ୍କର ଦେହ ଜଳିପୋଡ଼ି ପୁଣି ଭସ୍ମ ହୋଇଯାଉ । ଯେଉଁ ମାଟି ତାହାଙ୍କୁ ଜୀବନ ଦେଇଥିଲା; ସେ ମାଟିରେ ପୁଣି ଜୀବନର ଅବସାନ ହୋଇଯାଉ । କିନ୍ତୁ ତାଙ୍କର ହିତାକାଂକ୍ଷୀମାନେ ତାହା କରେଇ ଦେଇ ନ ଥିଲେ । ସେମାନେ ଚାହୁଁଥିଲେ କବି ଆଉ କିଛିଦିନ ବଞ୍ଚି ରହନ୍ତୁ । ତାହାଙ୍କର ଚିନ୍ତା ତଥା ଚେତନାକୁ ପ୍ରକାଶ କରନ୍ତୁ ।

ସେ ଦୃଷ୍ଟିରୁ ସେମାନେ କଟକ ନେବାପାଇଁ ସ୍ଥିର କରିଥିଲେ । ଡାକ୍ତରୀ ଚିକିତ୍ସା କରାଇ ଜୀବନ ସହିତ ସଂଗ୍ରାମ କରିବା ପାଇଁ ଦୃଢ଼ ନିଶ୍ଚିତ ହୋଇ ସାରିଥିଲେ ।

ନା—

ସେମାନେ ପାରି ନ ଥିଲେ ।

ପରାଜୟ ସେମାନଙ୍କ ଲାଗି ନିଶ୍ଚିତ ଥିଲା । ସମସ୍ତ ଚକାହ୍ରା ସେମାନଙ୍କ ଆଶାରେ ସାବୁଜିମା ଭରି ନ ଦେଇ ଧୂସର ମରୁର ମାୟା ଆଣିଦେଇଥିଲା ।

୧୯୨୮ ମସିହା ଜୁଲାଇ ମାସ ଏକ ତାରିଖ ଦିନ ଭୋର ଛଅଟା ବେଳେ ପଲ୍ଲୀକବି ନନ୍ଦକିଶୋରଙ୍କ ଜୀବନଦୀପ ଦପ୍ କରି ଜଳି ହଠାତ୍ ନିର୍ବାପିତ ହୋଇଯାଇଥିଲା କଟକ ନଗରୀ ଠାରେ ।

## ଚଉପାଢ଼ୀ ଚାଟଶାଳୀ

ଆଜିକାର ଶିକ୍ଷାପ୍ରଣାଳୀର ପ୍ରବର୍ତ୍ତନ ହୋଇ ନ ଥିଲା ସେତେବେଳେ । ଓଡ଼ିଶାର ପାରମ୍ପରିକ ରୀତିରେ ଗ୍ରାମ୍ୟ ଚାଟଶାଳୀରେ ଶିକ୍ଷା ପାଉଥିଲେ ଚାଟଗଣ । ତାହାହିଁ ଥିଲା ପଲ୍ଲୀମାନଙ୍କରେ ପ୍ରାଥମିକ ଶିକ୍ଷା । ପ୍ରାୟ ଅଧିକାଂଶ ଗ୍ରାମରେ ଗୋଟିଏ ଗୋଟିଏ ଗ୍ରାମ୍ୟ ଚଉପାଢ଼ୀ ଥିଲା ଓ ତାହା ଥିଲା ସାଧାରଣ ସମ୍ପତ୍ତି । ସେଠାରେ ଜଣେ ଜଣେ ଅବଧାନ ରହି ଗ୍ରାମର ବାଳକବାଳିକାମାନଙ୍କୁ ପୌରାଣିକ ପଦ୍ଧତିରେ ଶିକ୍ଷାଦାନ କରୁଥିଲେ । କ୍ଷେତ୍ରବଂଶୀୟ ଅବଧାନମାନଙ୍କ ଖ୍ୟାତି ଥିଲା ପୂର୍ବକାଳରେ ।

ନନ୍ଦକିଶୋରଙ୍କ ଜନ୍ମବେଳକୁ କୃଷ୍ଣପୁର ଗ୍ରାମର ଚଉପାଢ଼ୀଟି ଭାଙ୍ଗିଯାଇଥିଲା । କିନ୍ତୁ ସେହି ଗ୍ରାମର ଶ୍ରୀ ଅନନ୍ତ ମିଶ୍ର ଜଣେ ବିକଳାଙ୍ଗ ଥିଲେ ମଧ୍ୟ ଗ୍ରାମରେ ଶିକ୍ଷକତା କରୁଥିଲେ ଗ୍ରାମର ସେ ଅଭାବ ଦୂର

କରିବା ଲାଗି । ସେ ଖଞ୍ଜ ଥିଲେ । ଶରୀରର ଅନେକ ଅଙ୍ଗପ୍ରତ୍ୟଙ୍ଗ ବଙ୍କାଥିଲା ଠିକ୍ ଅଷ୍ଟାବକ୍ର ଋଷିଙ୍କ ବଙ୍କାଙ୍ଗଭଳି । ତେଣୁ ନିଜ ଗୃହର ପ୍ରାଙ୍ଗଣରେ ମାଟିର ଗୋଟିଏ ବେଦି ତିଆରି କରି, ତାହା ଉପରେ ଆସନ ପକାଇ ସେ ପିଲାମାନଙ୍କୁ ଶିକ୍ଷାଦାନ କରୁଥିଲେ । ତାହାଙ୍କ ଚଳନ ଶକ୍ତି ନ ଥିବାରୁ ଗୋଟାଏ ଦୀର୍ଘ ବେତ ଧରି ସେଇ ଚଉପାଢ଼ୀ ଉପରେ ବସି ଛୋଟ ଛୋଟ ପିଲାଙ୍କୁ ଶାସନ କରୁଥିଲେ । ଚାଟଶାଳୀରେ ଚାଟମାନଙ୍କର ପ୍ରଧାନ ଶାସନକର୍ତ୍ତା ଥିଲା ବେତ । ପଲ୍ଲୀ ଚାଟଶାଳୀମାନଙ୍କରେ ଗୁରୁମାନେ ପୂର୍ବକାଳରେ ଶାସିତ ହେବାର ପ୍ରଧାନ ଅସ୍ତ୍ର ବେତରୁ ହିଁ ଭୟ ଓ ଭୟରୁ ଭକ୍ତି ଜାତ ହେଉଥିଲା ।

ନନ୍ଦକିଶୋର ସେଇ ଅଷ୍ଟାବକ୍ର ଅନନ୍ତ ମିଶ୍ରଙ୍କ ଚାଟଶାଳୀରେ ବିଦ୍ୟାଶିକ୍ଷା ଆରମ୍ଭ କରିଥିଲେ । ସେଇ ଘରୋଇ ପାଠଶାଳାରେ ପଣିକିଆ, ଶୋଧ, ଓଡ଼ାଙ୍କ, ମେନ୍ଦାଙ୍କ ପ୍ରଭୃତି ଖଡ଼ିପାଠ ଉଚ୍ଚସ୍ୱରରେ, ସଙ୍ଗୀତମୟ ଭାଷାରେ ଆବୃତ୍ତି କରିବା ସଙ୍ଗେ ସଙ୍ଗେ ଲେଖିବାକୁ ହେଉଥିଲା । ସେଇମିତି ଉଚ୍ଚ ସ୍ୱରରେ ଆବୃତ୍ତି କରି କରି ଲେଖିବା-ବେଳେ ଯେଉଁ ଚାଟର ସ୍ୱର କମ୍ ଶୁଣାଯାଉଥିଲା ବା ଲେଖାରେ ଭୁଲ ହେଉଥିଲା ମିଶ୍ର ଅବଧାନଙ୍କ ଦୀର୍ଘବେତ ତା ପିଠି ନିକଟକୁ ଚାଲିଯାଉଥିଲା ଆପେ ଆପେ ।

ସେଇ ପାରମ୍ପରିକ ରୀତିରେ ପଲ୍ଲୀକବି ଶିକ୍ଷାଧ୍ୟୟନ କରିଥିଲେ । ହୁଏତ ସେଇଥିପାଇଁ କବି ଓଡ଼ିଶାର ପୁରାତନ ସାହିତ୍ୟ ପ୍ରତି ଅଭିମାନାରେ ସଚେତନ ହୋଇ ଉଠିଥିଲେ । ଅନେକ କବିଙ୍କ ଶ୍ରେଷ୍ଠ କୃତି ସହିତ ପରିଚିତ ହୋଇଥିଲେ ସେ । କେବଳ ସେ ଏକା ନୁହନ୍ତି ତାହାଙ୍କ ସହପାଠୀମାନେ ମଧ୍ୟ । ସେଥିପାଇଁ ମୁଖ୍ୟତଃ

ଦାୟୀ ଥିଲ ଓଡ଼ିଶାର ପାରମ୍ପରିକ ଶିକ୍ଷାଦାନ ବ୍ୟବସ୍ଥା—ଚଟଶାଳୀ ଗୁରୁଶାଳୀ ବ୍ୟବସ୍ଥା ।

ଅନନ୍ତ ମିଶ୍ରଙ୍କ ଚଉପାଢ଼ୀରେ ବିଦ୍ୟାଶିକ୍ଷା ଶେଷ ହେବା ପରେ ପରେ ନନ୍ଦକିଶୋର ଅନ୍ୟାନ୍ୟ ଅନେକ ଗୁରୁଙ୍କ ଭଳି ମନେ କରିଥିଲେ ଆଉ ଅଧିକ ବିଦ୍ୟାଶିକ୍ଷା ତାଙ୍କପାଇଁ ନିଷ୍ପ୍ରୟୋଜନ । ତାଙ୍କର ଅଭିଭାବକମାନଙ୍କ ନିଷ୍ପତ୍ତିକ୍ରମେ ସେ ସ୍ଥାନୀୟ ଜମିଦାରଙ୍କ ସିରସ୍ତାରେ କାର୍ଯ୍ୟ ଶିକ୍ଷା କରିବା ପାଇଁ ନିଯୁକ୍ତ ହୋଇଥିଲେ ।

## କଟକ ଜିଲ୍ଲାରେ ପ୍ରଥମ

ତେବେ କବିଙ୍କ ସେହି ବାଲ୍ୟକାଳରେ ହିଁ ଓଡ଼ିଶା ଶିକ୍ଷା ବ୍ୟବସ୍ଥାର ବିପୁଳ ପରିବର୍ତ୍ତନ ଘଟିଥିଲା । ଜିଲ୍ଲାର ସର୍ବୋଚ୍ଚ ଶାସନ ଧିକାରୀ କଲେକ୍ଟରଙ୍କ ଅଧୀନରେ ଯେଉଁ ସବ୍‌କଲେକ୍ଟର ବା ଡେପୁଟି ମାଜିଷ୍ଟ୍ରେଟ୍‌ମାନେ ରହୁଥିଲେ, ସେମାନଙ୍କ ପ୍ରତ୍ୟକ୍ଷ ଦାୟିତ୍ୱରେ ଶିକ୍ଷାବିଭାଗ ଛାଡ଼ି ଦିଆଯାଇଥିଲା । ଶିକ୍ଷା ଲାଗି ଏକ ସ୍ୱତନ୍ତ୍ରତା ସୃଷ୍ଟି ହୋଇ ନ ଥିବା ଦୃଷ୍ଟିରୁ ଶିକ୍ଷାର ମାନ ମଧ୍ୟ ଉନ୍ନତ ହୋଇପାରୁ ନ ଥିବା ଥିଲା ଏକାନ୍ତ ସ୍ୱାଭାବିକ ।

ଦେଶର ଶିକ୍ଷାପଦ୍ଧତିର ସେ ଅବହେଳାକୁ ସରକାର ହୃଦୟଙ୍ଗମ କରିଥିଲେ । ଅନେକ ଉତ୍ତରହେଲେ ମଧ୍ୟ ପରାଧୀନ ଭାରତର ରାଜନୈତିକ ଧାରାର ପରିବର୍ତ୍ତନ ସହିତ କେତେକ ସାମାଜିକ ପରିବର୍ତ୍ତନ ମଧ୍ୟ ସଂଘଟିତ ହୋଇଯାଉଥିଲା ।

ସମଗ୍ର ଦେଶରେ ସ୍ୱାୟତ୍ତ ଶାସନପଦ୍ଧତି ପ୍ରଚଳିତ ହୋଇଥିଲା । ସମୟକ୍ରମେ ଇଂରେଜ ଭାରତର ପରିଚାଳକ ଲର୍ଡ଼ ରିପନ୍ ଦେଶରେ ଜିଲ୍ଲାବୋର୍ଡ଼, ମ୍ୟୁନିସିପାଲିଟି ପ୍ରଭୃତିର ପ୍ରଚଳନ କରାଇଥିଲେ । ଶିକ୍ଷାବିଭାଗକୁ ସାଧାରଣ ଶାସନକଳରୁ ଅଲଗା କରି ଦିଆଯାଇଥିଲା । ପ୍ରତ୍ୟେକ ଜିଲ୍ଲାପାଇଁ ଜଣେ ଜଣେ ଡେପୁଟି ଇନସ୍ପେକ୍ଟର ନିଯୁକ୍ତ ହୋଇଥିଲେ କେବଳ ଶିକ୍ଷାବିଭାଗ କାର୍ଯ୍ୟ-ପରିଚାଳନା କରିବା ପାଇଁ । କଟକ ଜିଲ୍ଲାପାଇଁ ସେଇମିତି ପ୍ରଥମ ଜିଲ୍ଲା ଶିକ୍ଷା—ପରିଦର୍ଶକ ଭାବେ ନିଯୁକ୍ତି ପାଇଥିଲେ ଭକ୍ତକବି ମଧୁସୂଦନ ରାଓ । ସେତେବେଳକୁ ଓଡ଼ିଶାର ଶିକ୍ଷାବିଭାଗ ଦାୟିତ୍ୱରେ ଥିଲେ କବିବର ରାଧାନାଥ ରାୟ ଜଣେ ଯୁଗ୍ମ ପରିଦର୍ଶକ ଭାବେ ।

କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନ ଉଭୟେ ଥିଲେ ଓଡ଼ିଆ ଭାଷା ଓ ସାହିତ୍ୟପ୍ରେମୀ । ଉଭୟ ମାତୃଭାଷା ଓ ମାତୃଭୂମି ପ୍ରତି ଅତ୍ୟନ୍ତ ଅନୁରକ୍ତ ଥିଲେ । ତେଣୁ ଉଭୟେ ଚେଷ୍ଟା କରୁଥିଲେ, ବରଂ ଉଦ୍ୟମ କରୁଥିଲେ କିପରି ଦେଶରେ ଭାଷାର ପ୍ରସାର ହେବ । ସେହି ଉଦ୍ଦେଶ୍ୟରେ ରାଧାନାଥ ତତ୍‌କାଳୀନ ବିଖଣ୍ଡିତ ଓଡ଼ିଶାରେ ଗସ୍ତ କରୁଥିଲେ ଓ ଲୋକମାନଙ୍କୁ ଉତ୍ସାହିତ କରୁଥିଲେ ।

ଯେତେବେଳେ ଦୁଇଟି ସମଧାରାରେ ଗତି କରୁଥିବା ନଦୀର ମିଳନ ହୁଏ, ସୁଅରେ ପ୍ରଖରତା କିଞ୍ଚିତ୍ ପରିମାଣରେ ହେଲେ ମଧ୍ୟ ବଢ଼ିବା ସ୍ୱାଭାବିକ କଥା । ଉଭୟେ ଭକ୍ତକବି ଓ କବିବର ଯେତେବେଳେ ଏକାଠି କଟକ ଜିଲ୍ଲାରେ ଗସ୍ତ କରୁଥିଲେ ଜନ-ମାନସରେ ଓଡ଼ିଆ ଭାଷା ଶିକ୍ଷା ପ୍ରସାର କରିବା ହେଉଥିଲା ସେମାନଙ୍କ ମୂଳମନ୍ତ୍ର । ସ୍ଥାନେ ସ୍ଥାନେ ଲୋକମାନଙ୍କୁ ଉତ୍ସାହ ଦେବା ସେମାନଙ୍କ ଧର୍ମ ହୋଇପଡ଼ିଥିଲା ।

ପରେ ଉଭୟେ କଟକ ଜିଲ୍ଲାର କୁସୁପୁର ଅଞ୍ଚଳକୁ ଗସ୍ତରେ ଯାଇଥିଲେ, ସେତିକବେଳେ ପ୍ରଧାନ ଉଦ୍ଦେଶ୍ୟ ଦେଶରେ ଥିଲା ଶିକ୍ଷାର ପ୍ରସାର କରାଇବା । ସାଧାରଣ ସହୃଦୟତା ଦୃଷ୍ଟିରୁ ସେ ଅଞ୍ଚଳର ଜଣେ ଜଣାଶୁଣା ବ୍ୟକ୍ତି ତଥା ପଲ୍ଲୀକବିଙ୍କ ଜଣେ ବାଲ୍ୟଗୁରୁ ଶ୍ରୀ କୃଷ୍ଣଚନ୍ଦ୍ର ପଣ୍ଡା ତାହାଙ୍କୁ ନିକଟବର୍ତ୍ତୀ ଅଞ୍ଚଳର ଦର୍ଶନୀୟ ସ୍ଥାନ-ସବୁ ବୁଲାଇ ଦେଖାଇଥିଲେ । ସେମାନଙ୍କ ସହ ଗ୍ରାମର ଆଉ ଅନ୍ୟ କେତେଜଣ ପ୍ରତିନିଧି ସ୍ଥାନୀୟ ବ୍ୟକ୍ତି ମଧ୍ୟ ଥିଲେ । ରାଧାନାଥ ଓ ମଧୁସୂଦନଙ୍କୁ ସେମାନେ ଦେଖାଇଥିଲେ ନିକଟବର୍ତ୍ତୀ ଓଡ଼ିଶାର ଐତିହାସିକ ସ୍ଥାନ ଲଳିତଗିରି, ଉଦୟଗିରି ତଥା ପ୍ରାଚୀନ ପୁଷ୍ପଗିରି ବିହାର । ସେଠାକାର ପ୍ରାଚୀନ କଳାକୀର୍ତ୍ତିର ଭୂୟସୀ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଜାତୀୟତାବୋଧ ସୃଷ୍ଟି କରିବା ଉଦ୍ୟମ କରିଥିଲେ ଉଭୟ କବି । ସେମାନେ ତାହାଙ୍କ ସଙ୍ଗେ ଯାଇଥିବା ସେ ଅଞ୍ଚଳର ମୁଖିଆ ବ୍ୟକ୍ତିମାନଙ୍କ ମନରେ ଶିକ୍ଷାପ୍ରତି ଆଗ୍ରହ ଉଦ୍ରେକ କରାଇବା ଲାଗି ଉଦ୍ୟମ କରିଥିଲେ ।

ନନ୍ଦକିଶୋରଙ୍କ ବାଲ୍ୟଗୁରୁ କୃଷ୍ଣଚନ୍ଦ୍ର ପଣ୍ଡା ସେତେବେଳେ ସେ ଅଞ୍ଚଳରେ ଜଣେ ଶିକ୍ଷିତ ବ୍ୟକ୍ତିରୂପେ ପରିଗଣିତ ହେଉଥିଲେ । ସେ ମହାସିଂହପୁରର ମଧ୍ୟ ଭର୍ଣ୍ଣାକୁଲର ସ୍କୁଲରେ ପଢ଼ି ଭର୍ଣ୍ଣାକୁଲାର ପରୀକ୍ଷା ପାଶ୍ କରିଥିଲେ । ମଧୁସୂଦନଙ୍କ ପ୍ରୋତ୍ସାହ ତାହାଙ୍କ ମନକୁ ମଧ୍ୟ ଛୁଇଁ ପାରିଥିଲା । ତାଙ୍କ ସହିତ ସମମତ ପୋଷଣ କରିଥିଲେ ସେ ।

ପରେ ପରେ ସେମାନଙ୍କ ମଧ୍ୟରେ ବିସ୍ତୃତ ଆଲୋଚନା ହୋଇଥିଲା । ଶିକ୍ଷାର ପ୍ରସାର ପାଇଁ କୁସୁପୁରଠାରେ ଏକ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କରିବା ସ୍ଥିର ହୋଇଥିଲା । ସଂଗଠନ

ପାଇଁ ଅଧିନାୟକତ୍ୱ ଗ୍ରହଣ କରିଥିଲେ କୁସୁପୁରର ଜଣେ ମୁଖ୍ୟ ବ୍ୟକ୍ତି ଶ୍ରୀ ନିତ୍ୟାନନ୍ଦ ଜେନା । ତାଙ୍କର ସଂପାଦକତ୍ୱରେ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଗଠିତ ହୋଇଥିଲା । ପଲ୍ଲୀକବିଙ୍କ ଜ୍ୟେଷ୍ଠଭ୍ରାତା ଶ୍ରୀ ଦୟାନିଧି ଜେନା ଉକ୍ତ ସଂଗଠନ ସହ ଓତଃପ୍ରୋତ ଭାବରେ ଜଡ଼ିତ ଥିଲେ ।

ତାହାହେଲା ୧୮୮୭ ମସିହାର ଘଟଣା । ଗ୍ରାମରେ ଯେତେବେଳେ ଉଚ୍ଚ ପ୍ରାଥମିକ ସ୍କୁଲ ଗଠନ କରାଯାଇଥିଲା ବାଳକ ନନ୍ଦକିଶୋରଙ୍କ ଇଚ୍ଛାର କପୋତ ଆକାଶ ଛୁଇଁଥିଲା । ସେ ଭାବିଁଥିଲେ ହାତପାହାଆରେ ପାଉଥିବା ଉଚ୍ଚଶିକ୍ଷା ଲାଭକରିବେ ।

ତାହାହିଁ ହୋଇଥିଲା । ତାଙ୍କ ପରିବାରର ଲୋକେ ତାଙ୍କ ସହିତ ସମ୍ମତ ହୋଇଥିଲେ । ବିଶେଷକରି ସ୍କୁଲ ସଂଗଠନରେ ତାଙ୍କ ପରିବାରର ଅନ୍ୟ ବ୍ୟକ୍ତିମାନେ ଥିଲେ ଅଗ୍ରଣୀ ।

ଜମିଦାରୀ ସିରସ୍ତାରେ ତାଲିମ ନେବା ସେତିକରେ ବନ୍ଦ ରହିଥିଲା । ସେଇ ହିଁ ଥିଲା ନନ୍ଦକିଶୋରଙ୍କ ଜୀବନର ପ୍ରଧାନ ମୋଡ଼ । ତାଙ୍କର ଜୀବନଧାରାକୁ ବଦଳାଇ ଦେବାପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା, ନିଜ ଗ୍ରାମରେ ଉଚ୍ଚପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା ହୋଇ ନ ଥାନ୍ତା ତ ନନ୍ଦକିଶୋରଙ୍କ ଜୀବନର ଧାରା ହୁଏତ ନିଶ୍ଚିତଭାବେ ଭିନ୍ନ ହୋଇଥାନ୍ତା ।

ନନ୍ଦକିଶୋରଙ୍କ ପ୍ରାୟ ସମବୟସ୍କ କେତେଜଣ ଛାତ୍ର ଉକ୍ତ ସ୍କୁଲରେ ନାମ ଲେଖାଇଥିଲେ । ୧୮୯୦ ମସିହାରେ ନନ୍ଦକିଶୋରଙ୍କ ସମେତ ସେଇ ସ୍କୁଲରୁ ୯ ଜଣ ଛାତ୍ର ଉଚ୍ଚ ପ୍ରାଥମିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଉଲ୍ଲେଖଯୋଗ୍ୟ ଥିଲା

ନନ୍ଦକିଶୋର ସମଗ୍ର କଟକ ଜିଲ୍ଲାରେ ପ୍ରଥମ ହୋଇ ପାଶ୍ କରିଥିଲେ । ସେହିି କାରଣରୁ ସେ ହେଲେ ବୃତ୍ତି ପାଇବାର ଅଧିକାରୀ ।

ସେହିି ସମୟରୁ ହିଁ ସେ କବିତା ଲେଖିବା ଆରମ୍ଭ କରି ଦେଇଥିଲେ । କବିଜୀବନରେ ପ୍ରଥମ ସ୍ଫୁରଣ ହୋଇଥିଲା ଉକ୍ତ ଉଚ୍ଚ ପ୍ରାଥମିକ ପରୀକ୍ଷା ଦେଇ ଯିବା ପୂର୍ବରୁ ଠାକୁରଙ୍କ ନିକଟରେ ପ୍ରାର୍ଥନା—ତାହାଙ୍କୁ ପରୀକ୍ଷାରେ ସହାୟକ ହେବାପାଇଁ । ଉକ୍ତ ପରୀକ୍ଷା ଦେବାପାଇଁ ତାହାଙ୍କୁ ଅନ୍ୟମାନଙ୍କ ସହ କଟକ ଯିବାପାଇଁ ହୋଇଥିଲା ଓ କଟକ ଯିବା ପୂର୍ବରୁ ଗୋଟିଏ ସ୍ତବ ରଚନା କରି ଗ୍ରାମର ଦେବତା ନାରାୟଣୀ ଚଣ୍ଡୀଙ୍କ ନିକଟରେ ପାଠ କରିଥିଲେ । ଉକ୍ତ ସ୍ତବ ହିଁ ତାହାଙ୍କ ପ୍ରାର୍ଥନା ଥିଲା ।

ସତକୁସତ ନାରାୟଣୀ ଚଣ୍ଡୀ ନନ୍ଦକିଶୋରଙ୍କ ପ୍ରାର୍ଥନା ଶୁଣିଥିଲେ । ସମଗ୍ର କଟକ ଜିଲ୍ଲାରେ ପ୍ରଥମ ହୋଇ ସେ ପାଶ୍ କରିଥିଲେ ଉଚ୍ଚ ପ୍ରାଥମିକ ପରୀକ୍ଷାରେ । ବୃତ୍ତି ମଧ୍ୟ ଲାଭ କରିଥିଲେ । ତାହାର ପରିଣାମ ସ୍ୱରୂପ ।

# କୁସୁପୁରରୁ କଟକ

ଉଚ୍ଚ ପ୍ରାଥମିକ ପରୀକ୍ଷାରେ କୃତିତ୍ୱ ସହକାରେ ପାଶ୍ କରିବା ପରେ ପରେ ନନ୍ଦକିଶୋର କଟକ ଟାଉନ୍ ସ୍କୁଲରେ ନାମ ଲେଖାଇଥିଲେ । ସେତେବେଳର କଟକ ଟାଉନ୍ ସ୍କୁଲ ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠ । ସ୍ୱନାମଧନ୍ୟ ବିଶ୍ୱନାଥ କର ଥିଲେ ସେତେବେଳେ ଉକ୍ତ ଅନୁଷ୍ଠାନର ପ୍ରଧାନ ଶିକ୍ଷକ । ତାର ସଂପାଦକ ଥିଲେ ଭକ୍ତକବି ମଧୁସୂଦନ ।

ସୌଭାଗ୍ୟକ୍ରମେ ସେତେବେଳକୁ ନଗର ଇନ୍ସ୍ପେକ୍ଟର ପରିଚାଳକ ରୂପେ ନିଯୁକ୍ତ ହୋଇ ସାରିଥିଲେ ନନ୍ଦକିଶୋରଙ୍କର ଜ୍ୟେଷ୍ଠଭ୍ରାତା ଦୟାନିଧି ଜେନା । ନନ୍ଦକିଶୋରଙ୍କ ପାଇଁ ତାହା ଥିଲା ଏକ ଅପୂର୍ବ ସୁଯୋଗ । ତାଙ୍କର ବସାରେ ରହି କଟକ ଟାଉନ୍ ସ୍କୁଲରେ ଅଧ୍ୟୟନ କରିଥିଲେ ସେ ।

ତାଙ୍କ ଜୀବନର ଆଦର୍ଶ କବି ସ୍ଥିର କରିଥିଲେ ସେଇଠାରେ । ମଧୁସୂଦନ ତଥା ବାଗ୍ମୀ ବିଶ୍ୱନାଥ ନନ୍ଦକିଶୋରଙ୍କ ଧର୍ମଧାରଣା, କବିଜୀବନ, ଚରିତ୍ରଗଠନ, ଶିକ୍ଷା ଇତ୍ୟାଦି କ୍ଷେତ୍ରରେ ଅନେକଟା ପ୍ରଭାବ ବିସ୍ତାର କରିପାରିଥିଲେ ।

କଟକରେ ଦୟାନିଧି ଜେନା ଥିଲେ ନନ୍ଦକିଶୋରଙ୍କ ଅଗ୍ରଜ, ଅଭିଭାବକ ତଥା ପ୍ରଧାନ ଉପଦେଷ୍ଟା ଓ ପୃଷ୍ଠପୋଷକ । ସେ ରହୁଁଥିଲେ ନନ୍ଦକିଶୋର ଅଧିକରୁ ଅଧିକ ଶିକ୍ଷା ଲାଭ କରନ୍ତୁ । ସେ ଚାହୁଁଥିଲେ ନନ୍ଦକିଶୋର ଅଧିକରୁ ଅଧିକ ଶିକ୍ଷିତ ହୁଅନ୍ତୁ ।

କଟକରେ ବାଗ୍ମୀ ବିଶ୍ୱନାଥ କର ଥିଲେ ଦୟାନିଧିଙ୍କ ପଡ଼ୋଶୀ ଓ କୁଳପୁରୋହିତ ମଧ୍ୟ । ପଡ଼ୋଶୀ ଭାବରେ ବିଶ୍ୱନାଥ ବିଦ୍ୟାଳୟରେ ଅଧିକ ସତର୍କ ଦୃଷ୍ଟି ରଖିଥିଲେ ନନ୍ଦକିଶୋରଙ୍କ ଉପରେ । ତାହାଙ୍କ ମେଧା ଦେଖି ସେ ଖୁବ୍ ପ୍ରୀତ ହୋଇଥିଲେ ମଧ୍ୟ ।

ମାଇନର ପରୀକ୍ଷା ଦେବା ପୂର୍ବରୁ କେଉଁ କେଉଁମାନେ ପରୀକ୍ଷା ଦେବେ ସେଥିପାଇଁ ଏକ ବଚ୍ଛାବଚ୍ଛି ପରୀକ୍ଷା କରାଯାଇଥିଲା । ସେ ପରୀକ୍ଷାର ସାହିତ୍ୟ ପରୀକ୍ଷକ ଥିଲେ ନିଜେ ମଧୁବାବୁ । ସାହିତ୍ୟ ପ୍ରଶ୍ନ ପତ୍ରରେ ଗୋଟିଏ ପ୍ରଶ୍ନ ଥିଲା "କଜ୍ଜଳ ପକ୍ଷୀର ପବିତ୍ର ନିଃସ୍ୱନ, ଝିଗନ୍ତେ ସୂଚିଲା ଉଷା ଆଗମନ"—ଏହାକୁ ବିଭିନ୍ନ ଭାବରେ ପ୍ରକାଶ କରିବା । ଏହା ଛାତ୍ରମାନଙ୍କର ପଠିତ କୌଣସି ପୁସ୍ତକରେ ନ ଥିଲା ।

ନନ୍ଦକିଶୋର ଉକ୍ତ ପଂକ୍ତିର ୧୩ ପ୍ରକାର ବିଭିନ୍ନ ତର୍ଜମା କରିଥିଲେ । ସେଥିରେ ମଧୁବାବୁ ଏତେ ପ୍ରୀତ ହୋଇଯାଇଥିଲେ ଯେ, ତତ୍କାଳୀନ ସାହିତ୍ୟିକ ମହଲରେ ସେକଥା ପଡ଼ିଥିଲା । ସେତେବେଳର ସାହିତ୍ୟିକ ମହଲରେ ଅନ୍ତର୍ଭୁକ୍ତ ଥିଲେ ରାଧାନାଥ-ବାବୁ, ମଧୁବାବୁ, ବିଶ୍ୱନାଥବାବୁ, ରାମନାରାୟଣ ଲାଲ 'ପ୍ରମୁଖ ସାହିତ୍ୟିକମାନେ । ଏମାନଙ୍କ ପ୍ରଧାନ ସଂଗଠକ ଥିଲେ ରାଧାନାଥ ଓ ମଧୁସୂଦନ ।

ନିଜର କୃତି ସଂପର୍କରେ ବିଶ୍ୱନାଥବାବୁ ଅବହିତ କରାଇ ଦେଇଥିଲେ ନନ୍ଦକିଶୋରଙ୍କୁ । ସେଥିରେ ନନ୍ଦକିଶୋର ଅତ୍ୟନ୍ତ ପ୍ରୀତ ହୋଇ ଯାଇଥିଲେ । ଡବଲ ପ୍ରମୋସନ ପାଇ ଦୁଇବର୍ଷରେ ନନ୍ଦକିଶୋର କଟକ ଟାଉନ୍ ସ୍କୁଲରୁ ମାଇନର ପାଶ୍ କରିଥିଲେ ।

କଟକ ଟାଉନ୍ ସ୍କୁଲରୁ ମାଇନର ପାଶ କରିଥିଲେ ନନ୍ଦକିଶୋର । ଉଚ୍ଚ ପ୍ରାଥମିକ ପରୀକ୍ଷାରେ ଯେଉଁ ବୃତ୍ତି ହାସଲ କରିଥିଲେ, ଏଥର ମଧ୍ୟ ସେହିଭଳି କୃତିତ୍ୱ ପ୍ରଦର୍ଶନ କରିଥିଲେ ମାଇନର ପରୀକ୍ଷାରେ । ମାଇନର ପରୀକ୍ଷାରେ ବିଶେଷ କୃତିତ୍ୱ ଥିଲା ସେ ସାଧାରଣ ମେଧା ବୃତ୍ତି ପାଇବା ସଙ୍ଗେ ସଙ୍ଗେ ଆଉ ଗୋଟିଏ ଅଧିକା ବୃତ୍ତି ମଧ୍ୟ ପାଇଥିଲେ । ଗଣିତ ପରୀକ୍ଷାରେ ଖୁବ୍ ଭଲ କରିବା ଯୋଗୁ ଆଉ ଏକ ବିଶେଷ ବୃତ୍ତି ପାଇବା ଲାଗି ସେ ଯୋଗ୍ୟ ବିବେଚିତ ହୋଇଥିଲେ ।

ଅଧିକରୁ ଅଧିକ ବିଦ୍ୟାଶିକ୍ଷା ଲାଭ କରିବା ପାଇଁ ସ୍ପୃହା ନନ୍ଦକିଶୋରଙ୍କର ଥିଲା ଓ ଅଧିକ ପାଠ ପଢ଼ାଇବା ଇଚ୍ଛା ମଧ୍ୟ ଥିଲା ତାଙ୍କର ଅଭିଭାବକମାନଙ୍କର । କଟକରେ ରହିବାର ତ ସୁବିଧା ଥିଲା । ତେଣୁ ଉଚ୍ଚଶିକ୍ଷା ଲାଭ କରିବା ସମସ୍ତ ସୁଯୋଗ ଥିଲା ତାହାଙ୍କ ପାଇଁ ।

ସେତେବେଳେ କଟକର ଟାଉନ୍ ସ୍କୁଲ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ ହୋଇ ନ ଥିଲା । ତେଣୁ ସେ ବାଧ୍ୟହୋଇ କଟକ କଲିଜିଏଟ୍ ସ୍କୁଲରେ ନାମ ଲେଖାଇଥିଲେ ।

କଲିଜିଏଟ୍ ସ୍କୁଲରେ ପ୍ରଧାନ ଶିକ୍ଷକ ଥିଲେ ମଧୁସୂଦନ । ସେହି ସ୍କୁଲରେ ନାମ ଲେଖାଇବା ପରେ ପରେ ନନ୍ଦକିଶୋର କବି ମଧୁସୂଦନଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିବା ସୁଯୋଗ ପାଇଥିଲେ ଓ ବାରମ୍ବାର ତଥା ନିବିଡ଼ ସମ୍ପର୍କରେ ଆସିବା ଫଳରେ ତାହାଙ୍କ ପ୍ରଭାବରେ ପ୍ରଭାବିତ ହୋଇ ପଡ଼ିବା ସ୍ୱାଭାବିକ ଥିଲା ନନ୍ଦକିଶୋରଙ୍କ ନିକଟରେ ।

ମଧୁସୂଦନ ବ୍ରାହ୍ମଧର୍ମ ଗ୍ରହଣ କରି ସାରିଥିଲେ ସେତେବେଳକୁ ଏବଂ ଓଡ଼ିଶାରେ ପ୍ରଚାର ତଥା ପ୍ରସାରପାଇଁ ଚେଷ୍ଟିତ ହୋଇ ଉଠିଥିଲେ । ତାହାଙ୍କ ପ୍ରଭାବରେ ପ୍ରଭାବିତ ହୋଇ ଟାଉନ୍ ସ୍କୁଲ ହେଡ଼ମାଷ୍ଟର ବାଗ୍ମୀ ବିଶ୍ୱନାଥ କର ମଧ୍ୟ ସେତେବେଳକୁ ବ୍ରାହ୍ମଧର୍ମ ଗ୍ରହଣ କରିସାରିଥିଲେ । ବାଗ୍ମୀ ବିଶ୍ୱନାଥଙ୍କ ସେ ପ୍ରକାର ଧର୍ମ ସମ୍ବନ୍ଧୀୟ କାର୍ଯ୍ୟକଳାପ ଜଣେ ଉଚ୍ଚ ଶିକ୍ଷିତ ତଥା ଗୋଟିଏ ସ୍କୁଲର ପ୍ରଧାନ ଶିକ୍ଷକ ହିନ୍ଦୁ ଧର୍ମ ତ୍ୟାଗକରି ବ୍ରହ୍ମଧର୍ମ ଗ୍ରହଣ କରିବାଭଳି ଏକ ଧର୍ମାନ୍ତର କାର୍ଯ୍ୟ ସେତେବେଳେ ସମାଜରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା । ସମାଜରେ ତାଙ୍କର ଯେଉଁ ପ୍ରତିଷ୍ଠା ଥିଲା ତାହା କମିଯାଇଥିଲା ସେ ପ୍ରକାର କାର୍ଯ୍ୟକଳାପ ଯୋଗୁ । ଉଭୟ ଗୁରୁଙ୍କ ଆଦର୍ଶ ଜଣେ ଅନୁଗତକୁ ଅନୁପ୍ରାଣିତ କରିବା ଅତି ସହଜସାଧ୍ୟ ଥିଲା । ନନ୍ଦକିଶୋର ବ୍ରାହ୍ମସମାଜର ଆଲୋଚନାଗୁଡ଼ିକରେ ଯୋଗ ଦେବାପାଇଁ ପ୍ରଥମେ ପ୍ରଥମେ ଯିବା ଆସିବା ଆରମ୍ଭ କରି ପରେ ପରେ ସେଥିପ୍ରତି ବିଶେଷ ଆକୃଷ୍ଟ ହୋଇ ପଡ଼ିଥିଲେ । ତା ପରେ ପରେ ସ୍ୱତିମତ ଉକ୍ତ ଆଲୋଚନା ସଭାଗୁଡ଼ିକରେ ଅଂଶ ଗ୍ରହଣ କରିବା ପାଇଁ ମନ ବଳାଇଥିଲେ ।

କିନ୍ତୁ ଓଡ଼ିଶାର ଅନେକ ଶିକ୍ଷିତ ଲୋକ ବ୍ରାହ୍ମସମାଜର ଆଦର୍ଶକୁ ଅନୁମୋଦନ କରିପାରୁ ନଥିଲେ । ତେଣୁ ନନ୍ଦକିଶୋରଙ୍କ ସେ ପ୍ରକାର ମତିଗତି ପ୍ରତି ତାଙ୍କର ଅଭିଭାବକମାନେ ବୀତସ୍ପୃହ ହୋଇ ଉଠିଥିଲେ । ଏପରିକି କଟକରେ ରହିଲେ ବିଶ୍ୱନାଥ ତଥା ମଧୁସୂଦନଙ୍କ ପ୍ରଭାବରୁ କାଳେ ମୁକ୍ତ ହୋଇପାରିବେ ନାହିଁ ସେ ପ୍ରକାର ଆଶଙ୍କା ମଧ୍ୟ କରିଥିଲେ । ତେଣୁ ମସୁଧା ମଧ୍ୟ ହୋଇଥିଲା ଯେ, ସେତିକିରେ ବରଂ ନନ୍ଦକିଶୋରଙ୍କ ପାଠପଢ଼ା ବନ୍ଦହେବା

ଉଚିତ । ଅଭିଭାବକମାନଙ୍କ ମଧ୍ୟରୁ ଅନେକ ପସନ୍ଦ କରିଥିଲେ ଅଧିକ ପାଠ ପଢ଼ି ସମାଜ ବିରୋଧ କାର୍ଯ୍ୟକଳାପ କରିବାଠାରୁ ପାଠ ନ ପଢ଼ିବା ବରଂ ଭଲ ।

କିନ୍ତୁ ନନ୍ଦକିଶୋରଙ୍କ ଅଗ୍ରଜ ଦୟାନିଧି ଚାହୁଁଥିଲେ ନନ୍ଦକିଶୋର କୌଣସି ମତେ ଅଧିକ ବିଦ୍ୟା ଅଧ୍ୟୟନ କରନ୍ତୁ । କିନ୍ତୁ କଟକରେ ଅଧିକକାଳ ନ ରହିବାକୁ ପସନ୍ଦ କରିଥିଲେ ଅନ୍ୟମାନେ । ତେଣୁ ଦୟାନିଧି ଏକ ବିକଳ୍ପ ଯୋଜନା ପ୍ରସ୍ତୁତ କରିଥିଲେ ଅନୁଜର ବିଦ୍ୟାଶିକ୍ଷା ପାଇଁ । ସ୍ଥିର ହୋଇଥିଲା ସେ କଟକ ଛାଡ଼ି କେନ୍ଦ୍ରାପଡ଼ାରେ ବିଦ୍ୟାଧ୍ୟୟନ କରିବେ । ଉଦ୍ଦେଶ୍ୟ ବ୍ରାହ୍ମସମାଜର ପ୍ରଭାବରୁ । ତା ଫଳରେ ତାହାଙ୍କୁ ଦୂରେଇ ରଖାଯାଇପାରିବ ।

ଅତି ଦୁଃଖର ସହିତ ମଧୁସୂଦନ ତାଙ୍କର ଶିଷ୍ୟ ତଥା ଅନୁଗତ ଛାତ୍ର ନନ୍ଦକିଶୋରଙ୍କୁ ସ୍କୁଲ ପରିବର୍ତ୍ତନ କରିବା ପାଇଁ ଅନୁମତି ପତ୍ର ଦେଇଥିଲେ । ସେତେବେଳେ ନନ୍ଦକିଶୋରଙ୍କ ପିତା କେନ୍ଦ୍ରାପଡ଼ାଠାରେ ଏକ ଇଷ୍ଟେଟ୍‌ର ତହସିଲଦାରରୂପେ ନିଯୁକ୍ତ ହୋଇଥିଲେ । ପିତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେ ରହିଥିଲେ କେନ୍ଦ୍ରାପଡ଼ାଠାରେ । କେନ୍ଦ୍ରାପଡ଼ାର ହାଇସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ସେତେବେଳେ ଓ୍ୱାରିସିଅଲି । ସେ ଜଣେ ଖ୍ୟାତନାମା ଶିକ୍ଷାବିତ୍ ହିସାବରେ ପ୍ରତିଷ୍ଠା ଲାଭ କରିଥିଲେ ସେ ଅଞ୍ଚଳରେ ।

କେନ୍ଦ୍ରାପଡ଼ା ଚାଲିଯାଇଥିଲେ ମଧ୍ୟ ଭକ୍ତକବି ମଧୁସୂଦନ ରାଓଙ୍କ ସଂସ୍ପର୍ଶ ଭୁଲିବାର ନୁହେଁ । ସେଠାରୁ ପତ୍ରାଳାପ କରିଥିଲେ ପୁରାତନ ଗୁରୁଙ୍କ ସହିତ । ତାର ଉତ୍ତରରେ ଭଲଭାବରେ ଇଂରାଜୀ ଲେଖାପଢ଼ା କରିବା ଲାଗି ଉପଦେଶପୂର୍ଣ୍ଣ ଏକ ଚିଠି ପାଇଥିଲେ ।

ସେ ଦଣ୍ଡ ପାଇବା ପରେ ପରେ ମନଧ୍ୟାନ ଦେଇ ଇଂରାଜୀ ପଢ଼ିବାରେ ଲାଗିଥିଲେ ନନ୍ଦକିଶୋର । ପରେ ଦ୍ୱିତୀୟ ଚିଠି ଲେଖି ତାର ସନ୍ତୋଷଜନକ ଉତ୍ତରଟିଏ ପାଇ ଖୁସି ହୋଇଥିଲେ । ସେଥିରେ ଇଂରାଜୀ ଲେଖା ଓ ହସ୍ତାକ୍ଷରର ପ୍ରଶଂସା କରିଥିଲେ ଗୁରୁ ମଧୁସୂଦନ ।

୧୮୯୭ ମସିହାରେ ନନ୍ଦକିଶୋର ପ୍ରବେଶିକା ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ପୂର୍ବରେ ହୋଇଥିବା ପରୀକ୍ଷାମାନଙ୍କ ରେକର୍ଡ ବଜାୟ ରଖିଥିଲେ ସେ ।

ଏଥର ମଧ୍ୟ ମେଧାବୀ ବୃତ୍ତି ଲାଭ କରିଥିଲେ ନନ୍ଦକିଶୋର । ଜମିଦାରଙ୍କ ସିରସ୍ତାରୁ ଫେରିଆସି ଉଚ୍ଚ ପ୍ରାଥମିକ ସ୍କୁଲରେ ନାମ ଲେଖାଇବାଠାରୁ ସେ ପର୍ଯ୍ୟନ୍ତ ପ୍ରତ୍ୟେକ ପରୀକ୍ଷାରେ କୃତିତ୍ୱ ହାସଲ କରୁଥିଲେ ସେ ଏବଂ ପ୍ରତି ସରକାରୀ ପରୀକ୍ଷା ପରେ ପରେ ବୃତ୍ତି ମଧ୍ୟ ପାଉଥିଲେ ।

ତାହା ହିଁ ଥିଲା ତାଙ୍କ ଛାତ୍ରଜୀବନର ଚରମ ସଫଳତା ।

# କୋବିଦଙ୍କର କୃତିତ୍ୱ

ନନ୍ଦକିଶୋର ପ୍ରବେଶିକା ପରୀକ୍ଷାରେ ପାଶ୍ କରିବା ପରେ ପରେ ଯେତେବେଳେ କଲେଜରେ ଭର୍ତ୍ତି ହେବାପାଇଁ ସ୍ଥିରୀକୃତ ହେଲା, ପୁଣି ତାଙ୍କର ଅଭିଭାବକମାନଙ୍କ ଚିନ୍ତା ବଢ଼ିଯାଇଥିଲା । କିପରି ଭାବରେ ସେ ସେଇ ପୁରାତନ ସଂଗଠନରୁ ନିଜକୁ ଦୂରେଇ ରଖିବାଲାଗି ଉଦ୍ୟମ କରିବେ ତାହା ହିଁ ଥିଲା ସେମାନଙ୍କ ଚିନ୍ତାର ପ୍ରଧାନ କାରଣ । ସେମାନେ ମନେ କରିଥିଲେ ନନ୍ଦକିଶୋର କଟକ ଗଲେ ବିଶ୍ୱନାଥ ଓ ମଧୁସୂଦନଙ୍କ ସହିତ ତାଙ୍କର ପୁଣି ସଂପର୍କ ସ୍ଥାପିତ ହେବା ନିଶ୍ଚିତ ।

ସେଥିପାଇଁ ସେମାନେ ଏକ ଉପାୟ ସ୍ଥିର କରିଥିଲେ କବିଙ୍କ ମାନସରାଜ୍ୟରେ ଚଞ୍ଚଳତର ପ୍ରବାହ ସୃଷ୍ଟି କରାଇବା ପାଇଁ—କବିଜୀବନରେ ଚିର ବସନ୍ତର ସବୁଜିମା ସୃଷ୍ଟି କରାଇବା ପାଇଁ । ସେମାନଙ୍କ ହୃଦ୍‌ବୋଧ ହୋଇଥିଲା, ନନ୍ଦକିଶୋରଙ୍କୁ ଯଦି ବିବାହବନ୍ଧନରେ ଆବଦ୍ଧ କରିଦିଆଯାଏ ତେବେ ଉଦ୍ଦେଶ୍ୟ ସଫଳ ହୋଇପାରିବ !

ତାହାହିଁ ହୋଇଥିଲା । ଅଭିଭାବକମାନଙ୍କର ସେ ନିଷ୍ପତ୍ତି ପ୍ରକୃତରେ ଫଳପ୍ରଦ ହୋଇଥିଲା ।

କଲେଜ ଛାତ୍ର ଜୀବନରେ ପାଦ ଦେଇଥିବା ନନ୍ଦକିଶୋର ବିବାହ କରିଥିଲେ ।

କବି ନନ୍ଦକିଶୋର ବିବାହ କରିଥିଲେ କଟକ ଜିଲ୍ଲାର ଅସୁରେଶ୍ୱର ପ୍ରଗଣା ଅନ୍ତର୍ଗତ ବନ୍ତଳା ଗ୍ରାମର ଶ୍ରୀ ହରେକୃଷ୍ଣ ସାମଲଙ୍କ କନ୍ୟା କୋକିଳ ଦେବୀଙ୍କ ସହିତ ।

ସେତେବେଳର ପରିସ୍ଥିତିରେ ସେ ବିବାହ ସମାଜରେ କୌଣସି ସ୍ପନ୍ଦନ ସୃଷ୍ଟି କରି ନଥିଲା । କାରଣ ସାମାଜିକ ଚଳଣି ଭିତରେ ବାଲ୍ୟବିବାହ ଅଙ୍ଗୀଭୂତ ହୋଇଥିଲା ଏବଂ ସେମାନଙ୍କର ସନ୍ତାନମାନଙ୍କୁ "ବୁଢ଼ାବର" ତଥା "ଘରବୁଢ଼ୀ" କରାଇବା ବରଂ ପିତାମାତାଙ୍କ ସାମାଜିକ ପ୍ରତିଷ୍ଠା ଦିଗରେ ଏକ ପ୍ରଧାନ ଅନ୍ତରାୟ ଥିଲା । ତେଣୁ ସମସ୍ତେ ବ୍ୟାକୁଳ ଥଲେ ଝିଅ-ଘିଅକୁ ବେଶୀଦିନ ନିଜ ଘରେ ରଖିବେ ନାହିଁ । ଝିଅ ଜନ୍ମ କେବଳ ପର ଘରପାଇଁ । ସେମିତି ପୁଅକୁ ବି ବୁଢ଼ାବର କରାଇବେ ନାହିଁ ।

ସତକୁସତ ନନ୍ଦକିଶୋରଙ୍କ ବିବାହ ତାହାଙ୍କ ଜୀବନରେ ଏକ ଶିହରଣ ସୃଷ୍ଟି କରାଇବା ଲାଗି ସମର୍ଥ ହୋଇଥିଲା । ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଏକପ୍ରକାର ପରିବର୍ତ୍ତନ ଲକ୍ଷିତ ହୋଇଥିଲା ।

ପ୍ରତିଷ୍ଠିତ ସାମାଜିକ ପରଂପରା ସହିତ ଓତଃପ୍ରୋତ ଭାବରେ ଜଡ଼ିତ ଥିଲେ କୋକିଳ ଦେବୀ । ପ୍ରଚଳିତ ପରଂପରା ଥିଲା ସାମାଜିକ ନିୟମକାନୁନ୍ ଓ ସେ ସବୁକୁ ନତମସ୍ତକ ହୋଇ ମାନିନେବା ଦିଗରେ କୋକିଳ ଦେବୀ ଅଭ୍ୟସ୍ତ ହୋଇ ସାରିଥିଲେ । ସେ ଯେତେବେଳେ ନନ୍ଦକିଶୋରଙ୍କୁ ବିବାହ କରିଥିଲେ ଓ ଏକ ନୂତନ ପରିବାରର କର୍ତ୍ରୀ ହୋଇଥିଲେ, ସେ ଚାହିଁଥିଲେ ସେହିସବୁ ପ୍ରଚଳିତ ସାମାଜିକ ପରମ୍ପରାକୁ ନୂତନ ପରିବାରରେ ମଧ୍ୟ ଯଥୋଚିତ ସମ୍ମାନର ସହିତ ପାଳନ କରିବେ ।

କିନ୍ତୁ ନନ୍ଦକିଶୋରଙ୍କ ମତ ଥିଲା ସଂପୂର୍ଣ୍ଣ ଅଲଗା । ବ୍ରାହ୍ମ-ସମାଜର ଅନେକକଥା ଆଲୋଚନା, ବାଦବିସମ୍ବାଦ ତଥା ତାଙ୍କର ଅଷ୍ଟାତର ଦୁଇଜଣ ସ୍ୱନାମଧନ୍ୟ ଶିକ୍ଷାଗୁରୁଙ୍କ ବିଶ୍ୱନାଥ ଓ ମଧୁସୂଦନଙ୍କ ପ୍ରଭାବରେ ସେ ପ୍ରଭାବିତ ହୋଇ ସାରିଥିଲେ ସେତେବେଳକୁ । ପ୍ରତିମାପୂଜା ଓ ଦେଶରେ ପ୍ରଚଳିତ ସାମାଜିକ ପରମ୍ପରା, ଯେଉଁଗୁଡ଼ିକ ଜନଜୀବନ ସହ କୌଣସି ସଂପର୍କ ରଖିପାରୁ ନ ଥିଲା କିମ୍ବା ଶାସ୍ତ୍ରାନୁମୋଦିତ ନ ଥିଲା ସେଗୁଡ଼ିକ ପ୍ରତି କିମ୍ ଆସ୍ଥାବାନ୍ ଥିଲେ ସେ । ତେବେ ଏକଥା ମଧ୍ୟ ନିଶ୍ଚିତ ଥିଲା ଯେ, ସେ ବ୍ରାହ୍ମଧର୍ମ ଗ୍ରହଣ କରିବା ସପକ୍ଷରେ ନ ଥିଲେ । କାରଣ ତାହା ଓଡ଼ିଶାର ମାଟି, ପାଣି, ପବନ ସହ ଜଡ଼ିତ ସଂପର୍କ ରକ୍ଷା କରିପାରୁ ନ ଥିଲା । ମଧୁସୂଦନ ରାଓଙ୍କ ସ୍ମୃତି ସ୍ମରଣ କରି ସେ ନିଜ ଡାଏରୀରେ ଲେଖିଥିଲେ, "ମୋ ପ୍ରତି ମୋର ସନ୍ଦେହ ଚିରଦିନ ରହିଅଛି । ସେକଥା ଶୁଣି ଅନେକ ବ୍ରାହ୍ମବନ୍ଧୁ ସୁନ୍ଦର ଯୁକ୍ତି ପ୍ରଦର୍ଶନ କରନ୍ତି । କେହି କେହି ବିଦ୍ରୂପ କରନ୍ତି । କିନ୍ତୁ ରାଓ ସର୍ବଦା ସେ ବିଷୟରେ ମୋ ସହିତ ସହାନୁଭୂତି ପ୍ରଦର୍ଶନ କରୁଥିଲେ । ସେହି ସନ୍ଦେହ ମଧ୍ୟରୁ ଗୋଟିଏ ହେଉଛି ଭାଷା । ବ୍ରାହ୍ମସମାଜ ଓଡ଼ିଶାରେ ସ୍ଥାୟୀ ଓ ବିସ୍ତୃତ ହେଲେ ଓଡ଼ିଆ ଭାଷାର କି ଦଶା ହେବ ? ରାଧାନାଥ, ମଧୁସୂଦନ, ଫକୀରମୋହନ, ବିଶ୍ୱନାଥ ସମସ୍ତେ ବ୍ରାହ୍ମ ଭାବାନୁ-ପ୍ରାଣିତ ହୋଇ ସାହିତ୍ୟ ସୃଷ୍ଟି କରିଅଛନ୍ତି ସତ୍ୟ କିନ୍ତୁ ସେମାନଙ୍କ ବାଲ୍ୟଜୀବନ ଓଡ଼ିଆ ଭାଷାନୁକୂଳ ବ୍ରାହ୍ମସମାଜର ବଙ୍ଗଳା ଉପାସନା, ବଙ୍ଗଳା ପୁସ୍ତକ ପଠନ, ବଙ୍ଗାଳୀମାନଙ୍କ ସହ ବୈବାହିକ ମିଳନ, ସର୍ବଦା ବଙ୍ଗଳାରେ ଆଳାପ, ପତ୍ରାଦିଲିଖନ, ପରିବାରରେ ଭାଇ, ଦେଈ ବା ଅପା, ନନା, ନାମ ପରିବର୍ତ୍ତେ ଦାଦା,

ଢଙ୍ଗ ସମ୍ବୋଧନ ବଙ୍ଗଳା ପ୍ରସ୍ତାବ ଏସବୁର ପରିଣାମ ଫଳ କି ଓଡ଼ିଆ ଭାଷାର ଅନୁକୂଳ ?”

ଆଉ ଗୋଟିଏ କଥା । ଇଂରେଜୀ ଶିକ୍ଷା ସଭ୍ୟତା ଫଳରେ ବ୍ରାହ୍ମସମାଜ ବଙ୍ଗଦେଶରୁ ଜାତହୋଇ ବଙ୍ଗଳାର ଜଳବାୟୁରେ ବର୍ଦ୍ଧିତ ହୋଇଅଛି, ଓଡ଼ିଶାର Natural growth ନୁହେଁ । ପ୍ରଦେଶାନୁଗତ ସାହିତ୍ୟ ପରି ଧର୍ମକୁ ଅବିକଳ ଗ୍ରହଣ କରିବା ଭଲ ନା ତାହାକୁ ସ୍ୱଦେଶର ଜଳବାୟୁ ପୂର୍ବ ପ୍ରଚଳିତ ଧର୍ମଙ୍କାନର ସହଯୋଗରେ ସମନ୍ୱୟରେ ନିଜ ଗୁଞ୍ଚରେ ଢ଼ାଳିଦେବା ଉଚିତ୍ । ମଧୁସୂଦନ ଦାସ ରାଜନୈତିକ କ୍ଷେତ୍ରରେ ଓଡ଼ିଶାକୁ କାହାରି ଓଳିତଳେ ଠିଆ କରାଇ ନାହାନ୍ତି । ଧର୍ମସମ୍ପ୍ରଦାୟ ବିଷୟରେ ମଧ୍ୟ ଓଡ଼ିଆ ନିଜ ପଦ ଉପରେ ନିର୍ଭର କରି ତାହାର ନିଶାଣ ଉଡ଼ାଇ ପାରିବ ନାହିଁ ? ପଞ୍ଚସଖା ପ୍ରଚାରିତ ଧର୍ମ ପ୍ରଭୃତି ନାନା ଏକେଶ୍ୱର-ବାଦମୂଳକ ଧର୍ମକୁ ଏକ କରି ଓଡ଼ିଶାର ନିଜତ୍ୱ କିଛି ହୋଇ ପାରେ କି ? ଏହା କରିବା ଉଚିତ କି ବୋମ୍ବାଇ, ମାନ୍ଦ୍ରାଜ ପରି ବଙ୍ଗାଳୀମାନଙ୍କ ଠାରୁ ଏହା ନେବା ଉଚିତ୍ ?”

ଉକ୍ତ ଦୁଇଟି ସନ୍ଦେହ ତାଙ୍କର ମନ ଭିତରେ ଭୁମୁଳ ଆନ୍ଦୋଳନ ସୃଷ୍ଟି କରିଥିଲା । ତାର ସମାଧାନ ସେ ଖୁଜୁଁଥିଲେ । ଆଲୋଚନା ପ୍ରସଙ୍ଗରେ ଏକଥା ଉତ୍ଥାପିତ କରି ଲୋକହସା ହୋଇଥିଲେ ସିନା ସନ୍ଦେହ ଦୂର ହୋଇ ନ ଥିଲା । କିନ୍ତୁ ମଧୁସୂଦନଙ୍କ ଜୀବନାଦର୍ଶରେ ସେ ଅନୁପ୍ରାଣିତ ହୋଇଥିଲେ । ଋଣୀ ଥିଲେ ସାରାଜୀବନ ପାଇଁ ।

ନନ୍ଦକିଶୋର ଓ ତାଙ୍କ ସ୍ତ୍ରୀ ଉଭୟେ ଥିଲେ ଦୁଇଟି ଭିନ୍ନ ପଥର ପଥିକ ପଥିକା । କିନ୍ତୁ ଜୀବନର ଦୁଇଟି ଧାର

ଯେତେବେଳେ ଏକାକାର ହୋଇଯାଇଥିଲା ଦୁଇଟି ଭିନ୍ନ ଧର୍ମୀ ଜୀବନର ଧାରା ମଧ୍ୟ କ୍ରମଶଃ ଏକମୁଖୀ ହୋଇଯାଇଥିଲା ।

ନନ୍ଦକିଶୋର ତାଙ୍କ ପ୍ରିୟତମା ପତ୍ନୀଙ୍କର ଜୀବନଧାରା ସହିତ ନିଜର ଜୀବନଧାରାକୁ ମିଶାଇ ଦେଇଥିଲେ । ଜଣେ ତ ଅନ୍ୟ ଜଣଙ୍କ ସହିତ ସମମତ ପୋଷଣ କରିବ—ସ୍ୱାମୀ ହେଉ ବା ସ୍ତ୍ରୀ ହେଉ ।

କୋକିଳ ଦେବୀ ସତକୁସତ କୋକିଳର କୁହୁତାନରେ ମନ୍ତ୍ରିତ କରିଥିଲେ ନନ୍ଦକିଶୋରଙ୍କ ଜୀବନ ଉପବନ । ସତକୁସତ ଆଣି ଦେଇଥିଲେ ବସନ୍ତର ଉନ୍ମାଦନା ସ୍ୱାମୀଙ୍କ ମନ ଭିତରେ । ସୁପ୍ତ ଚେତନା ଜାଗ୍ରତ ଲାଭ କରିଥିଲା । କବିମାନସର ଉଚ୍ଛଳ ତରଙ୍ଗ ଲହଡ଼ି ଭାଙ୍ଗିଥିଲା ।

ନନ୍ଦକିଶୋରଙ୍କ ତନୁମନ ପୁଲକିତ ହୋଇ ଉଠିଥିଲା । ବାଣୀ ଦେବୀ ସରସ୍ୱତୀଙ୍କ ବୀଣାର ଝଂକାର ଶୁଣି ପାରିଥିଲେ ସେ ।

ପ୍ରାୟ ସେତିକି ବେଳର ସୃଷ୍ଟି "ବସନ୍ତ କୋକିଳ", ସେଥିରେ ପ୍ରସ୍ଫୁଟିତ କଲେଜ ଜୀବନର କାହାଣୀ; ଏକ ନବବିବାହିତ ଯୁବକ ଅନ୍ତରର ଅନ୍ତରତମ କଥା ।

ପ୍ରତ୍ୟକ୍ଷ ଅନୁଭୂତିଜର୍ଜରିତ ଉକ୍ତ କବିତାଗୁଚ୍ଛର ଅନେକ କବିତା ଏତେ ମର୍ମସ୍ପର୍ଶୀ ହୋଇଥିଲା ଯେ "ବସନ୍ତ କୋକିଳ" ପାଠକରି ଭକ୍ତକବି ମଧୁସୂଦନ ରାଓ ମତପ୍ରକାଶ କରିଥିଲେ । "କେତେଗୋଟି କବିତା ପଢ଼ି ମୋର ତୁମ୍ଭପ୍ରତି ଈର୍ଷା ହେଲା" । ଅଥଚ ସେହି ଭକ୍ତକବି ପୂର୍ବେ ଥରେ ଉତ୍କଳ ସାହିତ୍ୟରେ ନନ୍ଦକିଶୋରଙ୍କର ଗୋଟିଏ କବିତା ପଢ଼ିବା ପରେ ମତବ୍ୟକ୍ତ

କରିଥିଲେ ସେ ବରଂ ଗଦ୍ୟ ଲେଖାଲେଖି କରିବା ଉଚିତ । ତାଙ୍କର କହିବାର କାରଣ ଥିଲା ଉକ୍ତ କବିତାଟି ଭକ୍ତକବିଙ୍କ ମନକୁ ଛୁଇଁ ପାରି ନ ଥିଲା । ସେ ମଧ୍ୟ ସେହି କଲେଜ ଜୀବନର କଥା । ଅବଶ୍ୟ ପୂର୍ବ ଘଟଣାର କିଛିଦିନ ପରେ ପରେ ଆଉ ଗୋଟିଏ କବିତା ସେହି ଉତ୍କଳ ସାହିତ୍ୟରେ ଦେଖି ଆନନ୍ଦମୁଖରିତ ହୋଇ ପଡ଼ିଥିଲେ ସେ । ଏତେ ବିହ୍ୱଳ ହୋଇ ଯାଇଥିଲେ ଯେ, ନିଜେ ସ୍ୱର ସଂଯୋଜନା କରି ସଙ୍ଗୀତାକାରରେ ଗାନ କରିଥିଲେ ଏବଂ ତାରିଫ୍ କରି କହିଥିଲେ ଯେ, ସେଭଳି କବିତା ଓଡ଼ିଆ ଭାଷାରେ କାହିଁକି ବଙ୍ଗଳା ଭାଷାରେ ମଧ୍ୟ ସେ ଦେଖି ନଥିଲେ । କବିଙ୍କ ଅଜାଣତରେ ଉକ୍ତ କବିତାଟିକୁ କଟକ ଟ୍ରେନିଂ ସ୍କୁଲରେ ପାଠ୍ୟ-କ୍ରମରେ ଅନ୍ତର୍ଭୁକ୍ତ ମଧ୍ୟ କରିଥିଲେ । ତାହାହିଁ ତ କବିଜୀବନର ସାର୍ଥକତା ।

# ପଲ୍ଲୀକବି ନନ୍ଦକିଶୋର

କଲେଜ ଜୀବନରେ କବି ଅତ୍ୟନ୍ତ ସାହିତ୍ୟ ଅନୁରାଗୀ ହୋଇପଡ଼ିଥିଲେ । ଓଡ଼ିଆର ପୁରାତନ ରଚନାଗୁଡ଼ିକ ପ୍ରତି ଅତ୍ୟନ୍ତ ଅନୁରକ୍ତ ହୋଇପଡ଼ିଥିଲେ । ପ୍ରାଚୀନ ସାହିତ୍ୟଗୁଡ଼ିକ ତାହାଙ୍କୁ କବିଜୀବନର ପ୍ରେରଣାଦାୟକ ମନେ ହୋଇଥିଲା । ସେ କେବଳ ପ୍ରାଚୀନ ଓଡ଼ିଆ ସାହିତ୍ୟପ୍ରେମୀ ନ ଥିଲେ ମଧ୍ୟ ଜଣେ ଇଂରାଜୀ ସାହିତ୍ୟର ଅନୁରକ୍ତ ଥିଲେ । ସେହି କଲେଜ ଜୀବନରୁ ହିଁ ଅନେକଗୁଡ଼ିଏ କବିତା ମଧ୍ୟ ରଚନା କରିଥିଲେ ।

ନନ୍ଦକିଶୋରଙ୍କ ଜ୍ଞାନର ପରିସର ବୃଦ୍ଧି କରିବା ପାଇଁ ଯେଉଁ ଅଧ୍ୟାପକମାନଙ୍କ ସହଯୋଗ, ସାହାଯ୍ୟ ଓ ସହାନୁଭୂତି ଥିଲା ସେମାନେ ହେଲେ ଉପେନ୍ଦ୍ରନାଥ ମୈତ୍ର, ଏମ୍. ଏ. ହଲୱାର୍ଡ଼ ଓ ଅନ୍ୟମାନେ ।

କଲେଜରେ ତୃତୀୟ ବାର୍ଷିକ ଛାତ୍ର ଥିବାବେଳେ କଲେଜ-ସ୍ତରରେ ଏକ ପ୍ରବନ୍ଧ ପ୍ରତିଯୋଗିତା ହୋଇଥିଲା ଡାଲଟେନ୍ ପଦକ ପ୍ରଦାନ କରିବାପାଇଁ । ପ୍ରତିଯୋଗିତାର ବିଷୟବସ୍ତୁ ଥିଲା "ଉତ୍କଳର ପଲ୍ଲୀଜୀବନ ।" ଭାଷାର ମାଧ୍ୟମ ଥିଲା ଇଂରାଜୀ ଓ ବିଚାରକମଣ୍ଡଳୀରେ ଅନ୍ତର୍ଭୁକ୍ତ ଥିଲେ ରେଭେନସା କଲେଜର ଅଧ୍ୟକ୍ଷ, ବିଭାଗୀୟ କମିଶନର ଏବଂ ଟ୍ରେନିଂ ସ୍କୁଲର ପ୍ରଧାନ ଶିକ୍ଷକ ମଧୁସୂଦନ ରାଓ ।

ନନ୍ଦକିଶୋର ଉକ୍ତ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିଥିଲେ ଓ ତାଙ୍କର ପ୍ରବନ୍ଧ ଶ୍ରେଷ୍ଠ ବିବେଚିତ ହୋଇଥିଲା । ୧୮୯୭ ମସିହାରେ ଡାଲଟେନ୍ ସ୍ୱର୍ଣ୍ଣପଦକର ଅଧିକାରୀ ହୋଇ ପାରିଥିଲେ ସେ । ଡାଲଟେନ୍ ପଦକ ପ୍ରଦାନ କରିଥିଲେ କଟକ ଜିଲ୍ଲାବୋର୍ଡ଼ର ତତ୍କାଳୀନ ଚେୟାରମ୍ୟାନ ଇ. ଏଫ୍. ଗ୍ରାଣ୍ଡସ ।

ତିନିଜଣିଆ ବିଚାରକମଣ୍ଡଳୀର ଜଣେ ସଦସ୍ୟ ମଧୁସୂଦନ ଅତ୍ୟନ୍ତ ପ୍ରୀତ ହୋଇଥିଲେ ନନ୍ଦକିଶୋରଙ୍କ ଇଂରାଜୀ ପ୍ରବନ୍ଧ ପାଠକରି । ସେ କବିଙ୍କ ପ୍ରବନ୍ଧର ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତାହାକୁ ଓଡ଼ିଆରେ ରୂପାନ୍ତରିତ କରିବା ପାଇଁ ପ୍ରେରଣା ମଧ୍ୟ ଦେଇଥିଲେ । ମଧୁସୂଦନଙ୍କ ଠାରୁ ଉତ୍ସାହ ଓ ପ୍ରେରଣା ଲାଭ କରି ନନ୍ଦକିଶୋର ଉକ୍ତ ପ୍ରବନ୍ଧକୁ କବିତାର ସୁଲଳିତ ଧାରାରେ ନୂତନ ରୂପ ଦେଇଥିଲେ । ତାହା ହିଁ କବିଙ୍କ 'ପଲ୍ଲୀଚିତ୍ର'ର ପ୍ରଥମ ଭାଗ ।

ଆଠଟି ଦୃଶ୍ୟରେ ବିଭକ୍ତ ଏହି ପଲ୍ଲୀଚିତ୍ରର ପ୍ରଥମ ଭାଗ ହିଁ ନନ୍ଦକିଶୋରଙ୍କୁ ପଲ୍ଲୀକବି ରୂପେ ପରିଚିତ କରାଇ ଦେଇଥିଲା । ଉକ୍ତ ପଲ୍ଲୀଚିତ୍ରକୁ ତାଳଚେରର ରାଜା ଶ୍ରୀଯୁକ୍ତ ଶ୍ରୀ କିଶୋରଚନ୍ଦ୍ର ବୀରବର ହରିଚନ୍ଦନ ମହାପାତ୍ରଙ୍କୁ ଉତ୍ସର୍ଗ କରିଥିଲେ · ଶ୍ରଦ୍ଧା ଓ ସମ୍ମାନର ସହିତ ।

ନନ୍ଦକିଶୋର କଟକ କଲେଜରେ ଅଧ୍ୟୟନ କରିବା ବେଳେ କଟକରେ ଏକ ସାହିତ୍ୟ ଆଲୋଚନା ସଭା ସଂଗଠିତ ହୋଇଥିଲା । ସେତେବେଳେ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶକମାନେ ଉକ୍ତ ସାହିତ୍ୟ ସଂଗଠନ ସହିତ ସଂପୃକ୍ତ ଥିଲେ । ଅନ୍ୟମାନଙ୍କ ମଧ୍ୟରେ ଉତ୍କଳ ଇତିହାସର ଲେଖକ ଅଭିରାମ ଭଞ୍ଜ, 'ସୀତା ବିବାହ' ନାଟକର ରଚୟିତା । ଓଡ଼ିଆ ଭାଷାକୋଷର ପ୍ରଣେତା ଗୋପାଳଚନ୍ଦ୍ର ପ୍ରହରାଜ ତଥା ରାମକୃଷ୍ଣ ଘୋଷ, ରାମକୃଷ୍ଣ ନାୟକ, ବିନୋଦବିହାରୀ ଦାସ ପ୍ରମୁଖ ଉକ୍ତ ସାହିତ୍ୟିକ ଅନୁଷ୍ଠାନର ପ୍ରଧାନ ପ୍ରଧାନ କର୍ମୀ ଥିଲେ ।

ସାହିତ୍ୟ ସଂଗଠନର ପ୍ରଧାନ ଉଦ୍ଦେଶ୍ୟ ଥିଲା ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି କରିବା ।

ଉକ୍ତ ସାହିତ୍ୟ ସଂସଦର ସାଧାରଣ କାର୍ଯ୍ୟକ୍ରମ ଥିଲା— ସନ୍ଧ୍ୟାରେ ସମସ୍ତେ ସମବେତ ହୋଇ ପ୍ରତ୍ୟେକେ ସ୍ୱରଚିତ ଲେଖା ପାଠ କରିବା ଏବଂ ଉପସ୍ଥିତ ସମସ୍ତଙ୍କ ମଧ୍ୟରେ ପଠିତ ଲେଖା ଆଲୋଚିତ ହେବା । ଗଳ୍ପ କବିତାଠାରୁ ଆରମ୍ଭ କରି ପ୍ରବନ୍ଧ-ଗୁଡ଼ିକ ମଧ୍ୟ ଉକ୍ତ ସଭାରେ ପଠିତ ଓ ଆଲୋଚିତ ହେଉଥିଲା । ପରିଣାମତଃ ପୁରାତନ ଲେଖକମାନଙ୍କ ସମେତ ନୂତନ ଲେଖକମାନେ ମଧ୍ୟ ଅଧିକରୁ ଅଧିକ ଲେଖିବା ପାଇଁ ପ୍ରେରଣା ଲାଭ କରୁଥିଲେ ।

ରଚନାଶୈଳୀ ମଧ୍ୟ ମାର୍ଜିତ ହେଉଥିଲା । ଉକ୍ତ ସଂସଦର ଜଣେ ସଭ୍ୟରୂପେ ମନୋନୀତ ହୋଇଥିଲେ ନନ୍ଦକିଶୋର ।

ତା ପରେ ପରେ କଟକରେ ଆଉଦଳେ ସାହିତ୍ୟିକଙ୍କ ଉଦ୍ୟମରେ "କଟକ ଆଲୋଚନା ସଭା" ଗଠିତ ହୋଇଥିଲା । ତାର ବୈଠକଗୁଡ଼ିକ ସାଧାରଣତଃ ଭକ୍ତକବି ମଧୁସୂଦନଙ୍କ ବାସଭବନରେ ଅନୁଷ୍ଠିତ ହେଉଥିଲା କିମ୍ବା କଟକ ପ୍ରିଣ୍ଟିଂ କମ୍ପାନୀ ଗୃହରେ ବସୁଥିଲା । ପୁରାତନ ଶିକ୍ଷକ ତଥା ସାହିତ୍ୟିକ ମଧୁସୂଦନଙ୍କ ତତ୍ତ୍ୱାବଧାନରେ ଗଠିତ କଟକ ଆଲୋଚନା ସଭାର ଜଣେ ସକ୍ରିୟ ସଭ୍ୟ ଥିଲେ ନନ୍ଦକିଶୋର ।

ମୁଖ୍ୟତଃ ନନ୍ଦକିଶୋର ଆଲୋଚନା ସଭାର ସାଧାରଣ ଅଧିବେଶନ ଗୁଡ଼ିକରେ ଆଲୋଚକର ଭୂମିକା ଗ୍ରହଣ କରୁଥିଲେ । ମଧୁସୂଦନଙ୍କ ବାସଭବନରେ ଆଲୋଚନା ସଭା ବସିଲେ ତ ମଧୁସୂଦନ ଯୋଗ ଦେବା ସ୍ୱାଭାବିକ, ପ୍ରିଣ୍ଟିଂ କମ୍ପାନୀରେ ବୈଠକ ଅନୁଷ୍ଠିତ ହେଲେ ବି ଅଧିକାଂଶଥର ସେ ଯୋଗ ଦେଉଥିଲେ । ସେଇମିତି କବି ରାଧାନାଥ ମଧ୍ୟ । ଅନେକ ସମୟରେ ରାଧାନାଥ ଉକ୍ତ ଆଲୋଚନା ସଭାଗୁଡ଼ିକରେ ଭାଗ ନେଉଥିଲେ । ତାହା ଅନ୍ୟମାନଙ୍କ ପାଇଁ ଏକ ପରମ ଆକର୍ଷଣ ଥିଲା ।

ଅନେକ ସମୟରେ ରାଧାନାଥ ଓ ମଧୁସୂଦନଙ୍କ ରଚନାବଳୀ ମୁଖ୍ୟତଃ କାବ୍ୟକବିତା ସମ୍ପର୍କରେ ମଧ୍ୟ ଉକ୍ତ ସଭାର ସାଧାରଣ ବୈଠକଗୁଡ଼ିକରେ ଆଲୋଚନା ତଥା ସମାଲୋଚନା କରାଯାଉଥିଲା ଅନ୍ୟମାନଙ୍କ ରଚନାଭଳି । ତେବେ ସେ ସବୁ ଆଲୋଚନାରେ ମୁଖ୍ୟ ଅଂଶ ଗ୍ରହଣ କରୁଥିଲେ ନନ୍ଦକିଶୋର ।

ନନ୍ଦକିଶୋର ଥିଲେ ଜଣେ ନିର୍ଭିକ ଆଲୋଚକ । ଅନେକଙ୍କ ଭଳି ସେ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ପ୍ରଶଂସାରେ ମୁଖରିତ କରୁ-ନ ଥିଲେ ଆଲୋଚନା ବୈଠକର ବାତାବରଣକୁ । ସେ ସ୍ପଷ୍ଟ ଥିଲେ ରଚନାଗୁଡ଼ିକର ଭଲ ଦିଗଗୁଡ଼ିକ ବିଷ୍ଟର କରିବା ସଙ୍ଗେ ସଙ୍ଗେ ଦୋଷ-ଦୁର୍ଗୁଣଗୁଡ଼ିକ ମଧ୍ୟ ଲୋକଲୋଚନକୁ ଅଣାଯିବା ଆବଶ୍ୟକ । ବିଶେଷକରି ରଚୟିତାଙ୍କ ଦୃଷ୍ଟିପଥାରୂଢ଼ କରାଯିବା ଉଚିତ । ସେ ଯିଏ ହୁଅନ୍ତୁ ନା କାହିଁକି—ପ୍ରବୀଣ ହୁଅନ୍ତୁ ବା ହୁଅନ୍ତୁ ତରୁଣ, ଗୁରୁଦେବ ହୁଅନ୍ତୁ ବା ସହପାଠୀ ହୁଅନ୍ତୁ, ଶ୍ରଦ୍ଧାଜଣା ହୁଅନ୍ତୁ ବା ଅଶ୍ରଦ୍ଧା ହୁଅନ୍ତୁ ।

ଗଭୀର ନିଷ୍ଠା ଓ ଅଧ୍ୟବସାୟ ମଣିଷର ଜ୍ଞାନର ପରିସରକୁ ବୃଦ୍ଧି କରିଥାଏ । ସେ ନିଷ୍ଠାରେ ନିଷ୍ଠାବାନ୍ ଥିଲେ ଯୁବକ କବି ନନ୍ଦକିଶୋର । ଜ୍ଞାନ ଆହରଣ କରିବାର ଲିପ୍ସା ତାଙ୍କର ଥିଲା ଅସାଧାରଣ । ସାହିତ୍ୟ ଅନୁଶୀଳନ କରିବା ଥିଲା ତାଙ୍କର ପ୍ରବୃତ୍ତି । ସେଇଥିପାଇଁ ଯେତେବେଳେ ସମଗ୍ର ଓଡ଼ିଶା କବି ରାଧାନାଥ ଓ ମଧୁସୂଦନଙ୍କ ପ୍ରଶଂସାରେ ଶତମୁଖ ଥିଲା ତାଙ୍କର ଜଣେ ଗୁଣ ନନ୍ଦକିଶୋର ସାମାନ୍ୟତମ କୁଣ୍ଠା କରି ନ ଥିଲେ ଦୁଇଜଣ ପ୍ରତିଷ୍ଠିତ କବିଙ୍କର ରଚନାରେ ଥିବା ଅଂଶଗୁଡ଼ିକୁ ତାଙ୍କରିଦ୍ୱାରା ଆୟୋଜିତ ସଭାମାନଙ୍କରେ ହିଁ ପ୍ରକାଶ କରିବାଲାଗି ଓ କଣ କରାଯାଇଥିଲେ ବର୍ଣ୍ଣିତ ଚରିତ୍ରଗୁଡ଼ିକ ଆହୁରି ଅଧିକ ସୁନ୍ଦର ହୋଇପାରିଥାନ୍ତା, ସେ ସମ୍ପର୍କରେ ନିଜର ମତାମତ ପ୍ରକାଶ କରିବାଲାଗି ।

ତାହା ହିଁ ଥିଲା ତାଙ୍କ ଚରିତ୍ରର ବିଶେଷତ୍ୱ ।

# ରୁକ୍ଷଜୀବନ ଭାର

ନନ୍ଦକିଶୋର ୧୮୯୯ ମସିହାରେ ପରୀକ୍ଷାରେ ପାଶ୍ କରି କଲେଜ ଶିକ୍ଷା ଶେଷ କରିବା ପୂର୍ବରୁ ହିଁ ତାଙ୍କ ପିତାଙ୍କର ମୃତ୍ୟୁ ହୋଇଥିଲା । ତେଣୁ ପରିବାରର ଭରଣପୋଷଣ ଜନିତ କ୍ଲାନ୍ତି ତାଙ୍କ ମନକୁ ଭାରାକ୍ରାନ୍ତ କରି ପକାଇଥିଲା । କବିଜୀବନର କୋମଳତା ସତେ ଯେପରି ଦୂରେଇ ଯାଇଥିଲା ତାହାଙ୍କ ନିକଟରୁ ଦୂରକୁ, ଆହୁରି ଦୂରକୁ । ତଥାପି ପରବର୍ତ୍ତୀ ରଚନାର ପରିମାଣ କିଛି କମ୍ ନ ଥିଲା ତାଙ୍କର ।

୧୮୯୯ ମସିହାରେ ବି. ଏ. ପାଶ୍ କରିସାରିବା ପରେ ପରେ ନନ୍ଦକିଶୋରଙ୍କ ଶିକ୍ଷାଗୁରୁ ମଧୁସୂଦନଙ୍କ ଦ୍ୱାରା ପ୍ରତିଷ୍ଠିତ କଟକ ଟାଉନ ସ୍କୁଲରେ ଶିକ୍ଷକତା କରିବା ପାଇଁ ସ୍ଥିର କରିଥିଲେ ଜୀବନର ରୁକ୍ଷତାକୁ ଏଡ଼ାଇବା ପାଇଁ—ନିଜର ତଥା ପରିବାରର ଭରଣପୋଷଣ ପାଇଁ । ଏକଦା ସେଇ ସ୍କୁଲର ଛାତ୍ର ଥିଲେ ସେ, ପୁଣି ହେଲେ ଶିକ୍ଷକ । ସେ ଛାତ୍ର ଥିବାବେଳେ ସେ ସ୍କୁଲ ଏକ ମିଡ଼ିଲ ସ୍କୁଲ ଥିଲା । ଇତିମଧ୍ୟରେ ତାହା ହାଇସ୍କୁଲରେ ପରିଣତ ହୋଇସାରିଥିଲା ।

ବିଦ୍ୟାଗୁରୁ ମଧୁସୂଦନଙ୍କ ପ୍ରଭାବ ସ୍ପଷ୍ଟ ପ୍ରତିଫଳିତ ହୋଇଥିଲା ନନ୍ଦକିଶୋରଙ୍କ ଉପରେ । ସେ ବୁଝିଥିଲେ ସମାଜର ସେବା କରିବେ ଯେପରି ଭାବରେ ହେଉ ପଛେ, ଯେଉଁ କର୍ମକ୍ଷେତ୍ରରେ ରହନ୍ତୁ ପଛକେ ।

କଟକ ଟାଉନ ସ୍କୁଲ ହାଇସ୍କୁଲରେ ପରିଣତ ହେବା ପରେ ପରେ ତାର ନାମକରଣ ହୋଇଥିଲା ଟାଉନ ଭିକ୍ଟୋରିଆ ହାଇସ୍କୁଲ । ସେହି ସ୍କୁଲର ଜଣେ ଶିକ୍ଷକ ନନ୍ଦକିଶୋର ଗୁରୁ-ଗୁରୁଜୀଙ୍କର ଆଦର୍ଶସ୍ଥାନୀୟ ହୋଇ ପାରିଥିଲେ । ଅର୍ଥୋପାର୍ଜନ ପାଇଁ ଶିକ୍ଷକତା ନ କରି ଦେଶସେବାର ମାଧ୍ୟମ ରୂପେ ଗ୍ରହଣ କରିଥିବା ଯୋଗୁ ସେଠାରେ ଅବସ୍ଥାନ କାଳରେ ସାହିତ୍ୟିକ ଜୀବନରୁ ବିରତ ହେଇନଥିଲେ ବରଂ ସେହି ସମୟ ଭିତରେ କବିଙ୍କର ଅନେକଗୁଡ଼ିଏ ଗ୍ରନ୍ଥ ରଚିତ ହୋଇଥିଲା । ପଲ୍ଲୀଚିତ୍ର, ନିର୍ଝରିଣୀ, ସ୍ମୃତିଚିତ୍ର, ନିର୍ମାଲ୍ୟ, କୃଷ୍ଣାକୁମାରୀ, ସୀତା ବନବାସ ଏବଂ ଜନ୍ମଭୂମି ଇତ୍ୟାଦି କବିତା ଗ୍ରନ୍ଥ ରଚିତ ହୋଇଥିଲା କବିଙ୍କ ଶିକ୍ଷକତା କର୍ମକାଳ ମଧ୍ୟରେ ।

୧୯୦୦ ମସିହାରେ ଓଡ଼ିଆ ସାହିତ୍ୟ ଜଗତରେ ତଥା ଓଡ଼ିଆମାନଙ୍କ ଭିତରେ ଏକ ଚହଳ ପଡ଼ିଯାଇଥିଲା । ତାହାର ମୂଳରେ ଥିଲା କବି ନନ୍ଦକିଶୋରଙ୍କ ଗୋଟିଏ କବିତା ।

ସେତେବେଳେ ଓଡ଼ିଆ ଭାଷା ଓ ସାହିତ୍ୟପ୍ରେମୀମାନେ ଏପରିକି ଓଡ଼ିଶାରେ ଓଡ଼ିଆ ଭାଷାକୁ ଅସ୍ୱୀକାର କରିବା ଚକ୍ରାନ୍ତରୁ ମୁକ୍ତ କରାଇବା ପାଇଁ ଓ ଓଡ଼ିଆ ଭାଷା ତଥା ସାହିତ୍ୟର ପରିପୁଷ୍ଟି କରିବାପାଇଁ କଟକରୁ ଏକ ସାହିତ୍ୟ ପତ୍ରିକା "ଉତ୍କଳ ସାହିତ୍ୟ" ପ୍ରକାଶ କରୁଥିଲେ । ସମ୍ପାଦକ ଥିଲେ ବାଗ୍ମୀ ଶ୍ରୀ ବିଶ୍ୱନାଥ କର । ନନ୍ଦକିଶୋରଙ୍କ ନିବିଡ଼ତମ ସଂସ୍ପର୍ଶରୁ ତାଙ୍କ ପ୍ରତି ସାଧାରଣ ଦୁର୍ବଳତା ରହିବା ବିଶ୍ୱନାଥ କରଙ୍କ ପାଇଁ କିଛି ଅସ୍ୱାଭାବିକ ନ ଥିଲା । ପୁନଶ୍ଚ ସେତେବେଳକୁ ଯୁବକ ନନ୍ଦକିଶୋର ଓଡ଼ିଶାର ସାହିତ୍ୟିକ ମହଲରେ ଅତି ପରିଚିତ ଲାଭ କରିସାରିଥିଲେ । ଏତଦ୍‌ବ୍ୟତୀତ ନନ୍ଦକିଶୋରଙ୍କ ସାହିତ୍ୟିକ ରଚନାବଳୀ ଉତ୍କଳ ସାହିତ୍ୟରେ ଅନେକ ଦିନତକ ପ୍ରକାଶ ପାଇ ଆସୁଥିଲା ମଧ୍ୟ ।

ଉତ୍କଳ ସାହିତ୍ୟରେ "ଓଡ଼ିଆ ଲଳନା" ନାମରେ ଗୋଟିଏ କବିତା ନିଜ ନାମରେ ପ୍ରକାଶ ନ କରି ନନ୍ଦକିଶୋର ପ୍ରକାଶ କରିଥିଲେ ଏକ ଛଦ୍ମ ନାମରେ। ଉକ୍ତ ଛଦ୍ମ ନାମ ଥିଲା "ଶ୍ରୀ" ଏବଂ ତାହା ଥିଲା ଏକ ବ୍ୟଙ୍ଗ କବିତା । ସେପରି ଛଦ୍ମ ନାମରେ ପ୍ରକାଶ କରିବା ଉଦ୍ଦେଶ୍ୟ ଥିଲା ଓଡ଼ିଆ ନାରୀମାନଙ୍କ ବେଶ ଭୂଷା, ଗୃହଚଳନରେ କେତେକ ତ୍ରୁଟି ନନ୍ଦକିଶୋରଙ୍କ ମାନସରାଜ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲା । ତେଣୁ ସେ ଗୃହିଁଥିଲେ ସେ ସବୁର ଯେପରି ଶୀଘ୍ରରେ ହେଉ ସଂସ୍କାର କରାଯିବା ଉଚିତ । ତାଙ୍କର ଆଦୌ ଉଦ୍ଦେଶ୍ୟ ନ ଥିଲା ଜଣେ ସମାଲୋଚକର ଦୃଷ୍ଟି ନେଇ ସେ ସବୁକୁ ଆକ୍ଷେପ କରିବା ।

ଉତ୍କଳ ସାହିତ୍ୟରେ ଓଡ଼ିଆ ଲଳନା ପ୍ରକାଶ ପାଇବା ପରେ ପରେ ଶିକ୍ଷିତ ଓଡ଼ିଆ ମହଲରେ ଭୁମୁଳ ଆଲୋଡ଼ନ ସୃଷ୍ଟି ହୋଇ ଯାଇଥିଲା । କବିବର ରାଧାନାଥ ମଧ୍ୟ ସେ କବିତା ପଢ଼ି ବିଚଳିତ ହୋଇ ପଡ଼ିଥିଲେ । ସେତେବେଳେ ସେ ଥିଲେ କଲିକତାରେ। ସେଠାରୁ ସଙ୍ଗେ ସଙ୍ଗେ ସେ ଖଣ୍ଡିଏ ପତ୍ର ଲେଖିଥିଲେ ବିଶ୍ୱନାଥ କରଙ୍କ ନିକଟକୁ । ସେଥିରେ ସେ ସମ୍ପାଦକଙ୍କୁ ମଧ୍ୟ ଦାୟୀ କରିଥିଲେ ଯେ, ସେଭଳି କବିତା ପତ୍ରିକାରେ ସ୍ଥାନ ଦେବା ଆଦୌ ଉଚିତ ନ ଥିଲା । ତା ଫଳରେ ସେ ବିଜ୍ଞତାର ପରିଚୟ ଦେଇ ନ ଥିଲେ। କଟକରେ ପଣ୍ଡିତ ଗୋପବନ୍ଧୁ, ବ୍ରଜସୁନ୍ଦର ଦାସ, ହରେକୃଷ୍ଣ ନାୟକ ପ୍ରମୁଖଙ୍କ ଦ୍ୱାରା ସଂଗଠିତ "କର୍ତ୍ତବ୍ୟ ବୋଧିନୀ ସମିତି" ତରଫରୁ ମଧ୍ୟ ଉକ୍ତ କବିତାର ପ୍ରତିବାଦ କରାଯାଇଥିଲା। ସେମାନେ ଆକ୍ଷେପ କରିଥିଲେ ଯେ ଓଡ଼ିଆ ନାରୀର ବେଶଭୂଷା ନେଇ ଏକ ଆକ୍ଷେପମୂଳକ କବିତା ଓଡ଼ିଆ ପତ୍ରିକାରେ କାହିଁକି ପ୍ରକାଶିତ ହେବ । ସେମାନେ ସମସ୍ତେ ମନେ କରିଥିଲେ କବିତାର ରଚୟିତା

ଜଣେ ଓଡ଼ିଆ ନୁହନ୍ତି । ଅନ୍ୟ କୌଣସି ଜାତିର ହୋଇଥିବେ ନିଶ୍ଚୟ । ସେମାନେ ମନେ କରିଥିଲେ ଯେଉଁ ବଙ୍ଗାଳୀମାନେ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ଆନ୍ଦୋଳନ ଆରମ୍ଭ କରିଥିଲେ, ପ୍ରଚାର କରିଥିଲେ ଓ ଓଡ଼ିଶାରୁ ଓଡ଼ିଆ ଭାଷାକୁ ବିଲୋପ କରିବାର ଉଦ୍ୟମ ଧିନେ ଆରମ୍ଭ କରି ସରକାରଙ୍କ ନିକଟକୁ ମଧ୍ୟ ପତ୍ର ଲେଖିଥିଲେ, ସେହି ବଙ୍ଗାଳୀମାନଙ୍କ ମଧ୍ୟରୁ କେହି ହୁଏତ ସେପ୍ରକାର ଆକ୍ଷେପ କରିଥିବେ । ତେଣୁ ଓଡ଼ିଆପ୍ରେମୀ କଟକର ପ୍ରସିଦ୍ଧ ଓକିଲ ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ, ଶ୍ରୀ ମଦନମୋହନ ଦାସ ପ୍ରମୁଖ ଓକିଲମାନେ କବିତାର ଲେଖକଙ୍କ ବିରୁଦ୍ଧରେ ମାନହାନି ମୋକଦ୍ଦମା କରିବାଲାଗି ପ୍ରସ୍ତୁତ ହୋଇ ପଡ଼ିଥିଲେ ।

ସେଇ ଉଦ୍ଦେଶ୍ୟରେ ସେମାନେ ଯାଇଥିଲେ ବିଶ୍ୱନାଥ କରଙ୍କ ନିକଟକୁ । ସେମାନେ ପଚାରିଥିଲେ ଉକ୍ତ କବିତାର ଲେଖକ କିଏ ଜାଣିବା ପାଇଁ । କିନ୍ତୁ ପତ୍ରିକାର ସମ୍ପାଦକ ଜଣେ, ସମ୍ପାଦକର କର୍ତ୍ତବ୍ୟ ପାଳନ କରିଥିଲେ । ଓଡ଼ିଆ ଲଳନାର ଲେଖକ ଛଦ୍ମ ନାମରେ ନାମିତ 'ଶ୍ରୀ'ର ପ୍ରକୃତ ନାମ ପ୍ରକାଶ କରି ନଥିଲେ ।

ନିଜେ ବିଶ୍ୱନାଥ କର ଆଶା କରି ନଥିଲେ କବିତାର ପ୍ରଭାବ ଶିକ୍ଷିତ ଓଡ଼ିଆମାନଙ୍କ ମନରେ ଏତେଟା ପ୍ରତିକ୍ରିୟା ସୃଷ୍ଟି କରିବ ବୋଲି । ସେ ମଧ୍ୟ ବୋଧହୁଏ ଆଶା କରିଥିଲେ ହୁଏତ ଓଡ଼ିଆ ନାରୀମାନଙ୍କ ବେଶଭୂଷାରେ ସଂସ୍କାର ଅଣାଯାଇ ପାରିବ ଏପରି ମାଧ୍ୟମରେ ।

କବିତାର ପ୍ରକୃତ ନାମ ଜାଣି ନ ପାରିବାରୁ ଓକିଲମାନେ ସ୍ଥିର କରିଥିଲେ ସମ୍ପାଦକଙ୍କ ନାମରେ ମାନହାନି ମୋକଦ୍ଦମା ଦାଏର କରିବେ ।

କିନ୍ତୁ ପରେ ପରେ ସମସ୍ତ ସନ୍ଦେହ ଦୂରୀଭୂତ ହୋଇଥିଲା । ସମସ୍ତେ ଜାଣିଥିଲେ ଯେ ଉକ୍ତ କବିତାର ଲେଖକ ଜଣେ ଓଡ଼ିଆ ଓ ସାହିତ୍ୟିକ, ପରେ ପରେ ନନ୍ଦକିଶୋର ଯେ ପ୍ରକୃତରେ ଉକ୍ତ କବିତାର ଲେଖକ ତାହା ମଧ୍ୟ ପ୍ରକାଶ ପାଇଯାଇଥିଲା । ସେପରି ଏକ କବିତା ନନ୍ଦକିଶୋର ଲେଖିବାର ପ୍ରକୃତ ଉଦ୍ଦେଶ୍ୟ ଜଣା ପଡ଼ିବା ପରେ ଯେଉଁମାନେ ଉତ୍କଳ ସାହିତ୍ୟ ପତ୍ରିକାର ସମ୍ପାଦକଙ୍କ ବିରୁଦ୍ଧରେ ମୋକଦ୍ଦମା କରିବା ସ୍ଥିର କରିଥିଲେ ସେମାନେ ସେଥିରୁ ନିବୃତ୍ତ ରହିଥିଲେ ।

ସେ ଘଟଣା ବା ଦୁର୍ଘଟଣା ପରେ ପରେ ନନ୍ଦକିଶୋରଙ୍କ ପ୍ରତି ଶିକ୍ଷିତ ସମାଜର ଦୃଷ୍ଟି ଆକର୍ଷିତ ହୋଇଥିଲା । ତାହାଙ୍କର ସଂସ୍କାରଧର୍ମୀ ଚିନ୍ତାଧାରା ଓ କବିପ୍ରତିଭା ପ୍ରତି ଅନେକେ ଆକୃଷ୍ଟ ହୋଇପଡ଼ିଥିଲେ ।

ଭିକ୍ଟୋରିଆ ସ୍କୁଲରେ ଶିକ୍ଷକ ଥିବାବେଳେ ନନ୍ଦକିଶୋରଙ୍କ ଅଧିକାଂଶ ଅବସର ସମୟ ବିତାଉଥିଲେ ରାଧାନାଥ, ବିଶ୍ୱନାଥ, ମଧୁସୂଦନ ତଥା ଅନ୍ୟ ସାହିତ୍ୟିକମାନଙ୍କ ଗହଣରେ, ସାହିତ୍ୟ ଆଲୋଚନାରେ । ବେଳେ ବେଳେ ସାମାଜିକ ପ୍ରଗତି ଓ ଓଡ଼ିଆ ଭାଷା ତଥା ସାହିତ୍ୟର ଉନ୍ନତି କିପରି କରାଯାଇ ପାରିବ ତାହା ସେମାନଙ୍କ ଆଲୋଚନା ପରିସରଭୁକ୍ତ ଥିଲା ।

ଥରେ ସେଇମିତି ରାଧାନାଥଙ୍କ ଘରକୁ ଏଇମିତି ଗଲାବେଳେ ସେଠାରେ ଉପସ୍ଥିତ ଥିଲେ ବାମଣ୍ଡାର ରାଜା ସୁଚଳଦେବ । ଉଭୟଙ୍କର ସେ ସାକ୍ଷାତ ଉଭୟଙ୍କ ପାଇଁ ମଙ୍ଗଳପ୍ରଦ ଥିବା ଉଦ୍ଦେଶ୍ୟ, ଉଭୟେ ବୁଝିଥିଲେ । ଓଡ଼ିଆ ଭାଷାର ଉନ୍ନତି, ଓଡ଼ିଆ ସାହିତ୍ୟର ପ୍ରସାର ତଥା ପୁଷ୍ଟିକରିବା ଉଦ୍ଦେଶ୍ୟ ଉଭୟଙ୍କୁ ନିକଟତର କରାଇ ପାରିଥିଲା ।

ରାଜା ସୁଡ଼ଳଦେବ କଟକ ଆସିଲେ ରାଧାନାଥଙ୍କ ଗୃହରେ ଅବସ୍ଥାନ କରୁଥିଲେ । ଓଡ଼ିଶାର ଅନେକ ରାଜା ଓ ଜମିଦାରଙ୍କଭଳି ବାମଣ୍ଡାର ରାଜା ମଧ୍ୟ ଓଡ଼ିଆ ସାହିତ୍ୟର ଜଣେ ପରମ ପୃଷ୍ଠପୋଷକ ଥିଲେ । ଅନ୍ୟ ଅନେକ ରାଜାଙ୍କ ଭଳି ସେ କେବଳ ଜଣେ ସାହିତ୍ୟର ପୃଷ୍ଠପୋଷକ ନ ଥିଲେ ଥିଲେ, ଜଣେ ସାହିତ୍ୟିକ ମଧ୍ୟ । ସେହି କାରଣରୁ ଓଡ଼ିଶାର ସାହିତ୍ୟିକମାନଙ୍କ ସହ ସୁଡ଼ଳଦେବ ସ୍ନେହାନୁବନ୍ଧନରେ ବାନ୍ଧହୋଇ ଯାଇଥିଲେ । ସେହି ବନ୍ଧନର ଆବଦ୍ଧ ମଧ୍ୟକୁ ଟାଣିହୋଇ ଆସିଯାଇଥିଲେ ନନ୍ଦକିଶୋର, ଯଦିଓ ଉଭୟଙ୍କ ମଧ୍ୟରେ ପ୍ରଥମ ସାକ୍ଷାତ ହୋଇଥିଲା ଆକସ୍ମିକଭାବେ ।

୧୯୦୧.ମସିହାରେ ନନ୍ଦକିଶୋର ଏକ କ୍ଷୁଦ୍ର କାବ୍ୟ ରଚନା କରିଥିଲେ "କୃଷ୍ଣାକୁମାରୀ" ଓ ତାହା ଉତ୍ସର୍ଗ କରିଥିଲେ ବାମଣ୍ଡା ରାଜା ସୁଡ଼ଳଦେବଙ୍କୁ—ସମସ୍ତ ଆନ୍ତରିକତାର ସହିତ । କବି ଉତ୍ସର୍ଗପତ୍ରରେ ଲେଖିଥିଲେ, "ପରମ ସମ୍ମାନାସ୍ପଦ, ପରମୋଦ୍ୟମୀ, ମିତକୁଶଳ, କର୍ମବୀର, ବୀରବାମା, ଚନ୍ଦ୍ରହୋସୁଳ, ଅଳଂକାର ବୋଧୋଦୟର ପ୍ରଣେତା, ସମ୍ବଲପୁର ହିତୈଷିଣୀର ଜନ୍ମଦାତା ଓ ପୋଷଣକର୍ତ୍ତା, ଓଡ଼ିଆ ସାହିତ୍ୟର ପ୍ରଧାନ ଉତ୍ସାହଦାତା, ଗୁଣଗ୍ରାହୀ, ପ୍ରଖ୍ୟାତଯଶା, ବାମଣ୍ଡାଧିପତି ଶ୍ରୀଯୁକ୍ତ ବାସୁଦେବ ସୁଡ଼ଳଦେବ, କେ. ସି. ଆଇ. ଇ. ମହୋଦୟଙ୍କ ଗୌରବାନ୍ୱିତ ନାମରେ ବିଗତ ବର୍ଷ କଟକ ଅବସ୍ଥାନ ବେଳେ କବିତା ରଚନା ବିଷୟରେ ଲେଖକ ପ୍ରତି ତାହାଙ୍କ ପ୍ରଦର୍ଶିତ ଉତ୍ସାହରେ ଲେଖକର ଆନ୍ତରିକ ଭକ୍ତି, ସମ୍ମାନ ଓ କୃତଜ୍ଞତାର ନିଦର୍ଶନ ସ୍ୱରୂପ ଏହି କୃଷ୍ଣାକୁମାରୀ ନାମକ କ୍ଷୁଦ୍ର କବିତା ଗ୍ରନ୍ଥ ଉତ୍ସୃଷ୍ଟ ହେଲା ।

ଉକ୍ତ କ୍ଷୁଦ୍ର କାବ୍ୟର ପ୍ରଶଂସା ମଧ୍ୟ କରିଥିଲେ ରାଧାନାଥ ରାୟ ।

ରାଜା ସୁଡ଼ଳଦେବଙ୍କର ଗୋଟିଏ ପଣ୍ଡିତସଭା ଥିଲା । ତାହା ଠିକ୍ ଇତିହାସପ୍ରସିଦ୍ଧ ରାଜା ବିକ୍ରମାଦିତ୍ୟଙ୍କ ରାଜସଭାର ଅନୁରୂପ ଥିଲା ବରଂ ସୁଡ଼ଳଦେବ ତାହାଙ୍କୁ ଅନୁକରଣ କରିଥିଲେ । ଉକ୍ତ ପଣ୍ଡିତସଭାରେ ପ୍ରାଚୀନ ଓ ଆଧୁନିକ ସାହିତ୍ୟର ଆଲୋଚନା ହେଉଥିଲା ପ୍ରାଞ୍ଜଳଭାବେ । ଯେଉଁମାନେ ରାଜା ସୁଡ଼ଳଦେବଙ୍କୁ ଗ୍ରନ୍ଥସବୁ ଉପହାର ଦେଉଥିଲେ ସେ ସବୁ ଉକ୍ତ ପଣ୍ଡିତସଭାରେ ଆଲୋଚନା କରାଯାଉଥିବା ଥିଲା ଏକାନ୍ତ ସ୍ୱାଭାବିକ ।

କବି ନନ୍ଦକିଶୋରଙ୍କ କୃଷ୍ଣାକୁମାରୀ ମଧ୍ୟ ସେ ପ୍ରକାର ଆଲୋଚନାର ପରିସର ମଧ୍ୟକୁ ଆସିଥିଲା ସମୟକ୍ରମେ । ସେଥିରେ କୌଣସି କୌଣସି ବର୍ଣ୍ଣନା ସେଠିକା ପଣ୍ଡିତମଣ୍ଡଳୀଙ୍କୁ ଅସଙ୍ଗତ ମନେ ହୋଇଥିଲା ଓ ତାହାର ସ୍ପଷ୍ଟୀକରଣ ପାଇଁ ସେମାନେ ନନ୍ଦକିଶୋରଙ୍କ ପାଖକୁ ପତ୍ର ଲେଖିଥିଲେ ।

କବି ଯେଉଁ ଉତ୍ତର ଲେଖିଥିଲେ ସେଥିରେ ସମସ୍ତେ ଆନନ୍ଦିତ ହେବାର କାରଣ ଥିଲା ନନ୍ଦକିଶୋରଙ୍କ ସୂକ୍ଷ୍ମ ବିଚାରବୁଦ୍ଧି ।

## ଉତ୍କଳ ସମ୍ମିଳନୀରେ

୧୯୦୩ ମସିହାରେ ଖଲିକୋଟର ରାଜା ସ୍ୱର୍ଗୀୟ ହରିହର ମର୍ଦ୍ଦରାଜଙ୍କ ପ୍ରରୋଚନା ଓ ନୀଳମଣି ବିଦ୍ୟାରତ୍ନଙ୍କ ସାଂଗଠନିକ ଉଦ୍ୟମରେ ଗଞ୍ଜାମ ସମ୍ମିଳନୀର ଆୟୋଜନ କରାହୋଇଥିଲା । ଉଦ୍ଦେଶ୍ୟ ଥିଲା ଗଞ୍ଜାମ ଓଡ଼ିଶାର ଅଂଶବିଶେଷ ହୋଇଥିବା ଦୃଷ୍ଟିରୁ ତାହା ଓଡ଼ିଶା ଡିଭିଜନ ସହିତ ମିଶିବା ଆବଶ୍ୟକ ।

ଗଞ୍ଜାମ ସେତେବେଳେ ମାନ୍ଦ୍ରାଜ ସରକାରଙ୍କ ଶାସନାଧୀନ ଥିଲା । ତଥାପି ଓଡ଼ିଆ ଭାଷା, ସାହିତ୍ୟ ଓ ଜାତୀୟତାକୁ ବଞ୍ଚାଇ ରଖିବାଲାଗି ଗଞ୍ଜାମର ଅବଦାନ ସମଗ୍ର ଓଡ଼ିଶାପାଇଁ ଥିଲା ଅଦ୍ୱିତୀୟ । ଉକ୍ତ ଗଞ୍ଜାମ ସମ୍ମିଳନୀ ପାଇଁ ଓଡ଼ିଶାର ସମସ୍ତ ଜାତୀୟ ଚେତନା ଥିବା ନେତୃବୃନ୍ଦ ନିମନ୍ତ୍ରିତ ହୋଇଥିଲେ । ବିଶେଷ-ଭାବରେ ନିମନ୍ତ୍ରିତ ହୋଇଥିବା ବ୍ୟକ୍ତିମାନଙ୍କ ଭିତରେ ଥିଲେ ବ୍ୟାସକବି ଫକୀରମୋହନ, ଦେଶପ୍ରାଣ ମଧୁସୂଦନ, ପଣ୍ଡିତ ଗୋପବନ୍ଧୁ, ଦେୱାନ ଶଙ୍କର ରାୟ, ପଣ୍ଡିତ ଗୋପୀନାଥ ନନ୍ଦ, ସଦାଶିବ ବିଦ୍ୟାଭୂଷଣ, ଶଶିଭୂଷଣ ରାୟଙ୍କ ସମେତ ପଲ୍ଲୀକବି ନନ୍ଦକିଶୋରପ୍ରମୁଖ ଓ ଅନ୍ୟମାନେ । ଉକ୍ତ ସମ୍ମିଳନୀର ସଂଗଠନ କ୍ଷେତ୍ରରେ ଯେଉଁମାନେ ଥିଲେ ସେମାନଙ୍କ ମଧ୍ୟରେ ଗଞ୍ଜାମର ସଂସ୍କାରକ ଶ୍ରୀବତ୍ସ ପଣ୍ଡା ଓ ପୁରୀର ମୋକ୍ତାର ରାମଚନ୍ଦ୍ର ଦାସ ଥିଲେ ଅନ୍ୟତମ ।

ଉକ୍ତ ଗଞ୍ଜାମ ସମ୍ମିଳନୀ ଓଡ଼ିଶାର ନେତୃବୃନ୍ଦଙ୍କ ମନରେ ଏକ ଚେତନା ଆଣାଇବାରେ ସମର୍ଥ ହୋଇଥିଲା ଯେ ଯେଉଁ ଉଦ୍ଦେଶ୍ୟ ନେଇ ଗଞ୍ଜାମ ସମ୍ମିଳନୀର ଆୟୋଜନ କରାଯାଇଥିଲା ସେହି ଉଦ୍ଦେଶ୍ୟକୁ ଅକ୍ଷୁଣ୍ଣ ରଖାଯାଇ ତାହାର ସୀମା ବୃଦ୍ଧି କରାଗଲେ ଭଲ ହୁଅନ୍ତା । ସମସ୍ତ ନେତୃବୃନ୍ଦ ସମ୍ମିଳିତ ମତପୋଷଣ କରିଥିଲେ ଯେ, ବୃହତ୍ତର ସ୍ୱାର୍ଥସାଧନ ପାଇଁ ଗଂଜାମ ସମ୍ମିଳନୀକୁ ଉତ୍କଳ ସମ୍ମିଳନୀରେ ପରିଣତ କରାଯାଉ । ଗଂଜାମର ଯେଉଁ ସ୍ୱାର୍ଥସାଧନ ଲାଗି ଉକ୍ତ ଗଂଜାମ ସମ୍ମିଳନୀ ଗଠିତ ହୋଇଥିଲା, ଉତ୍କଳ ସମ୍ମିଳନୀ ଉକ୍ତ କାର୍ଯ୍ୟ ହାତକୁ ନେବା ସଙ୍ଗେ ସଙ୍ଗେ ଆଉ ଅନ୍ୟ ଲକ୍ଷ୍ୟସବୁ ପୂର୍ଣ୍ଣ କରିବାପାଇଁ ତତ୍ପର ହୋଇ

ଉଠିବ । ତାହା ହେବ ସମସ୍ତ ଓଡ଼ିଆଙ୍କର ଏକ ବୃହତ୍ତମ ଅନୁଷ୍ଠାନ । ଉକ୍ତ ପ୍ରସ୍ତାବ କାର୍ଯ୍ୟକାରୀ ହୋଇଥିଲା ।

ଗଞ୍ଜାମ ସମ୍ମିଳନୀର କର୍ମକର୍ତ୍ତାମାନେ ଉକ୍ତ ସମ୍ମିଳନୀରେ ଏକମତ ହୋଇଥିଲେ । ଉକ୍ତ ଅନୁଷ୍ଠାନ ହିଁ ଉତ୍କଳ ସମ୍ମିଳନୀର ପ୍ରଥମ ପାହାଚ ଥିଲା ।

କବି ନନ୍ଦକିଶୋର ଗଞ୍ଜାମ ସମ୍ମିଳନୀରେ ଯୋଗ ଦେବା ଅବସରରେ ତାହାଙ୍କୁ ଗୋଟିଏ ଗୀତ ଲେଖିବା ପାଇଁ କର୍ତ୍ତାମାନଙ୍କ ଦ୍ୱାରା ଅନୁରୋଧ କରାଯାଇଥିଲା । ସେ ସଙ୍ଗେ ସଙ୍ଗେ ଗୋଟିଏ ଦେଶାତ୍ମବୋଧ ସଙ୍ଗୀତ ରଚନା କରିଥିଲେ । ତାହାକୁ ସ୍ୱର ସଂଯୋଜନା କରି ଗାନ କରିଥିଲେ କଟକର ସଙ୍ଗୀତଜ୍ଞ ସ୍ୱର୍ଗତ ଖାନ୍ ମହମ୍ମଦ ।

ଓଡ଼ିଶାର ଅନ୍ୟତମ ଜାତୀୟ ବୀର କୁଳବୃଦ୍ଧ ମଧୁସୂଦନଙ୍କ ସହ ତାଙ୍କର ସୁସଂପର୍କ ରହିଥିଲା । ସେତେବେଳେ ମଧୁସୂଦନଙ୍କ ଜାତୀୟ ଚେତନା ଥିଲା ଅତ୍ୟନ୍ତ ଉଗ୍ର । ଓଡ଼ିଶାର ସ୍ୱାର୍ଥ ରକ୍ଷା ପାଇଁ ସେ କଲିକତାରୁ ଓକିଲାତି ଛାଡ଼ି କଟକ ଆସିଥିଲେ କେବଳ ଦେଶ ସେବା କରିବେ ବୋଲି । ବିଚ୍ଛିନ୍ନାଞ୍ଚଳଗୁଡ଼ିକର ଏକତ୍ରୀକରଣ କିପରି ହୋଇପାରିବ ତାହା ସେତେବେଳେ ତାଙ୍କର ଥିଲା ଏକମାତ୍ର ଚିନ୍ତା । ତାଙ୍କର ଜାତୀୟ ଚେତନାକୁ କାର୍ଯ୍ୟକାରୀ କରିବାପାଇଁ ସେ ବିଭିନ୍ନ ପ୍ରକାର କାର୍ଯ୍ୟକ୍ରମ ଗ୍ରହଣ କରୁଥିଲେ । ଏଣୁ ନିଜ ଖର୍ଚ୍ଚରେ ଉତ୍କଳ ସମ୍ମିଳନୀର ପ୍ରଥମ ବୈଠକ କଟକରେ ଡକାଇବା ଲାଗି ନିଜେ ପ୍ରସ୍ତୁତ ଥିଲେ ଓ ଡକାଇଥିଲେ ମଧ୍ୟ । ଗଞ୍ଜାମ ସମ୍ମିଳନୀକୁ ଉତ୍କଳ ସମ୍ମିଳନୀରେ ପରିଣତ କରିବା ମୂଳରେ ତାଙ୍କର ଉଦ୍ୟମ ଥିଲା ସ୍ମରଣୀୟ ।

କଲିକତାରୁ କଟକ ଆସି ଓକିଲାତି କରିବାକୁ ବସିଥିଲେ । ତାଙ୍କର ମୁଖ୍ୟ କାର୍ଯ୍ୟକ୍ଷେତ୍ର କଟକ ଆସିବାର ଅଭିମୁଖ୍ୟ ବଦଳି ଯାଇଥିଲା । କେବଳ ମୋକଦ୍ଦମା ସଂକ୍ରାନ୍ତୀୟ କାର୍ଯ୍ୟ କରିବାକୁ ଆସିଲେ ମଧ୍ୟ ଓଡ଼ିଆ ସଂଗଠନ ତଥା ସେଭଳି ଅନ୍ୟାନ୍ୟ କାର୍ଯ୍ୟ-କଳାପ ସମ୍ପର୍କରେ ଆଲୋଚନା ଆରମ୍ଭ ହୋଇଗଲେ କେବଳ ମୋକଦ୍ଦମା କାର୍ଯ୍ୟ କାହିଁକି, ନିଜର ଖାଇବା ପିଇବା ବି ଭୁଲି ଯାଉଥିଲେ । ସେଭଳି ନେତାଙ୍କ ସଂସ୍ପର୍ଶରେ ଜାତୀୟ ଚେତନା ଧାରାରେ ଅନୁପ୍ରାଣିତ ନନ୍ଦକିଶୋର ଯେତେବେଳେ ଯେ କୌଣସି କାର୍ଯ୍ୟ ନେଇ ଯାଉଥିଲେ ମଧ୍ୟ ଆରମ୍ଭ ହେଉଥିଲା ସେହି ସଂଗଠନ କାର୍ଯ୍ୟ—ଓଡ଼ିଆ ଭାଷା, ସାହିତ୍ୟର ଉନ୍ନତି, ଓଡ଼ିଶା ଦେଶମିଶ୍ରଣ କାର୍ଯ୍ୟ ଓ ସେପରି ଆଉ ଅନ୍ୟକିଛି ଜାତୀୟତାମୂଳକ ଯୋଜନା ।

କବି ନନ୍ଦକିଶୋର ସେ ସବୁ ଆଲୋଚନାର ପ୍ରତିଫଳନ ଦେଖିଥିଲେ ନିଜର କବିତାମାନଙ୍କରେ, ନିଜର ଲେଖନୀପ୍ରସୂତ ସଙ୍ଗୀତାବଳୀରେ । ଜାତୀୟବାଦରେ ଉଦ୍‌ବୁଦ୍ଧ କବିର ମାନସ-ସଂତାନ ଜାତୀୟବାଣୀ ନ ହୋଇ ଆଉ ବା କ'ଣ ହୁଅନ୍ତା ?

ସେ ସବୁ ଜାତୀୟ ସଙ୍ଗୀତର ସମାହାର "ଜନ୍ମଭୂମି"ର ଦ୍ୱିତୀୟ ଭାଗ ।

# ନିଜେ ପ୍ରେରଣାର
# କାଉଁରୀ କାଠି

ତିନିବର୍ଷ ଭିକ୍ଟୋରିଆ ସ୍କୁଲରେ ଶିକ୍ଷକତା କରିବା ପରେ ନନ୍ଦକିଶୋର ନିଯୁକ୍ତି ପାଇଥିଲେ କଟକ ଜିଲ୍ଲାବୋର୍ଡ଼ ଅଧୀନରେ ସ୍କୁଲ ପରିଦର୍ଶକ ରୂପେ । ସ୍କୁଲ ପରିଦର୍ଶକର କାର୍ଯ୍ୟ ଥିଲା ସମଗ୍ର ଜିଲ୍ଲା ପରିଦର୍ଶନ କରି ପ୍ରାଥମିକ ବିଦ୍ୟାଳୟଗୁଡ଼ିକର କାର୍ଯ୍ୟକଳାପ ତଦାରଖ କରିବା ।

ସ୍କୁଲ ପରିଦର୍ଶକ ହିସାବରେ ଦୀର୍ଘ ଗୁରିବର୍ଷ କାଳ ଅତିବାହିତ ହୋଇଥିଲା ନନ୍ଦକିଶୋରଙ୍କର । ହୁଏତ ଆହୁରି ଅଧିକ କାଳ ସେହି କାର୍ଯ୍ୟରେ ନିଯୁକ୍ତ ରହିଥାନ୍ତେ । ତେଣୁ ମଧୁସୂଦନଙ୍କ ପରାମର୍ଶ ଓ ସହାୟତାକ୍ରମେ ଉକ୍ତ କାର୍ଯ୍ୟରୁ ଅବ୍ୟାହତି ପାଇଥିଲେ ।

କଟକ ଜିଲ୍ଲାର ବିଭିନ୍ନ ସ୍ଥାନ ସରକାରୀ କାର୍ଯ୍ୟ ନିର୍ବାହ ଲାଗି ଗସ୍ତ କରିବା ଫଳରେ ଖାଦ୍ୟପେୟର ଅନିୟମିତା ଓ ରହିବା ଇତ୍ୟାଦିର ଅସ୍ଥିରତା ତାଙ୍କ ସ୍ୱାସ୍ଥ୍ୟପାଇଁ ପ୍ରତିକୂଳ ପରିସ୍ଥିତି ସୃଷ୍ଟି କରିଥିଲା । ସ୍ୱାସ୍ଥ୍ୟଭଙ୍ଗ ହେବା ସଙ୍ଗେ ସଙ୍ଗେ ସାହିତ୍ୟିକ କାର୍ଯ୍ୟାବଳୀ ମଧ୍ୟ ଅହଲଗ୍ନ ହୋଇପଡ଼ିଥିଲା ।

ଭକ୍ତକବି ମଧୁସୂଦନ ସେତେବେଳେ ଓଡ଼ିଶା ଶିକ୍ଷାବିଭାଗର ଇନ୍ସପେକ୍ଟର ଥିଲେ । ନନ୍ଦକିଶୋର ସ୍କୁଲ ପରିଦର୍ଶକ କାର୍ଯ୍ୟରୁ ଅବ୍ୟାହତି ନେବାପାଇଁ ନିଜର ସମସ୍ତ ଅସୁବିଧା ଦର୍ଶାଇ ଏକ

ଦରଖାସ୍ତ କରିଥିଲେ ସରକାରଙ୍କ ନିକଟରେ । ମଧୁସୂଦନ ସେଥିରେ ସୁପାରିଶ ମଧ୍ୟ କରିଥିଲେ ଉଚିତଭାବେ । କାରଣ ସେ କବି ନନ୍ଦକିଶୋରଙ୍କୁ ବହୁ ପୂର୍ବରୁ ଭଲରୂପେ ଜାଣିଥିଲେ ଓ ତାଙ୍କର ଦୁରବସ୍ଥା ମଧ୍ୟ ହୃଦୟଙ୍ଗମ କରିଥିଲେ । ମଧୁସୂଦନଙ୍କ ସୁପାରିଶ କ୍ରମେ ନନ୍ଦକିଶୋର ତାଙ୍କର ଉଦ୍ୟମରେ କୃତକାର୍ଯ୍ୟ ହୋଇଥିଲେ । ସରକାର ତାଙ୍କ ଦରଖାସ୍ତର ସୁବିଚାର କରିଥିଲେ । ସ୍କୁଲ ପରିଦର୍ଶକ କାର୍ଯ୍ୟରୁ ଅବ୍ୟାହତି ଦିଆଯାଇ ତାହାଙ୍କୁ ପୁନଃ ନିଯୁକ୍ତ ଦିଆଯାଇଥିଲା ଶିକ୍ଷକଭାବେ । କିନ୍ତୁ ଏଥର ସେ ନିଯୁକ୍ତି ପାଇଥିଲେ କଟକ ଟ୍ରେନିଂ ସ୍କୁଲର ସହକାରୀ ଶିକ୍ଷକଭାବେ । ସେ ଥିଲା ୧୯୦୭ ମସିହାର କଥା ।

ସେତେବେଳେ କଟକ ଟ୍ରେନିଂ ସ୍କୁଲର ପ୍ରଧାନଶିକ୍ଷକ ଥିଲେ ଚନ୍ଦ୍ରମୋହନ ମହାରଣା । ସେ ଜଣେ ଉଗ୍ର ଓଡ଼ିଆପ୍ରେମୀ ଏବଂ ସାହିତ୍ୟସେବୀ ତଥା ପ୍ରବୀଣ ଶିକ୍ଷକ । ନନ୍ଦକିଶୋର ତାହାଙ୍କ ଅଧୀନରେ ଚାକିରି କରିବାକୁ ସୁଯୋଗ ପାଇଥିବାରୁ ନିଜକୁ ଧନ୍ୟ ମନେ କରିଥିଲେ । ଅପରପକ୍ଷରେ ଚନ୍ଦ୍ରମୋହନ ବାବୁ ମଧ୍ୟ ଯୁବକ ନନ୍ଦକିଶୋରଙ୍କର ଉତ୍ତରୋତ୍ତର ଉନ୍ନତି କପରି ହେବ ସେଥିପାଇଁ ଚେଷ୍ଟା କରିଥିଲେ । ସାହିତ୍ୟ ସୃଷ୍ଟିପାଇଁ ପ୍ରେରଣା ଯୋଗାଇବା ତ ସାଧାରଣ କଥା ଥିଲା । ଟ୍ରେନିଂ ସ୍କୁଲକୁ ଆସିବାପରେ ନନ୍ଦକିଶୋର ସତେ ଯେମିତି ପୂର୍ବ ଜୀବନକୁ ଫେରି ଆସିଥିଲେ ତିନିବର୍ଷ ପରେ ।

ସେଇ ଟ୍ରେନିଂ ସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ୧୯୧୦ ମସିହାରେ ଶିକ୍ଷକତାର ଏକ ତାଲିମ ବି. ଟି. ପାଇଁ କଲିକତା ଯିବାଲାଗି ସ୍ଥିର କରିଥିଲେ । ଡେଭିଡ୍ ହେୟାର ଟ୍ରେନିଂ କଲେଜ, କଲିକତାରେ ପ୍ରାୟ ଏକ ବର୍ଷପାଇଁ ତାଲିମ ପାଇଥିଲେ । ସେଠାରୁ ଫେରି ପୁଣି ଯୋଗ ଦେଇଥିଲେ ସେଇ କଟକ ଟ୍ରେନିଂ ସ୍କୁଲରେ ।

କଲିକତାରେ ଟ୍ରେନିଂ ନେବା କାଳରେ ଅନେକ ସାର୍ଥକ ସାହିତ୍ୟ ସୃଷ୍ଟି କରିଥିଲେ ନନ୍ଦକିଶୋର । କବିଙ୍କ କବିତା ଗ୍ରନ୍ଥ "ସନ୍ଧ୍ୟା ସଙ୍ଗୀତ"ର ୨ୟ କବିତା "ସନ୍ଧ୍ୟା ତାରା" କଲିକତାରେ ରଚିତ ଏକ ଅନନ୍ୟ କବିତା ।

ସି. ଟି. ପାଶ କରିବା ପରେ ପରେ ୧୯୧୧ ମସିହାରେ ସମ୍ବଲପୁର ଜିଲ୍ଲାସ୍କୁଲର ପ୍ରଧାନ ଶିକ୍ଷକ ଭାବେ ନିଯୁକ୍ତି ପାଇଥିଲେ ପଲ୍ଲୀକବି । ଦୀର୍ଘଦିନର ମମତା ଛିନ୍ନକରି ପ୍ରିୟ କଟକ ସହର ଛାଡ଼ିବାକୁ ହୋଇଥିଲା ତାଙ୍କୁ ସମ୍ବଲପୁର ଉଦ୍ଦେଶ୍ୟରେ । ସମ୍ବଲପୁର ରହଣୀ କାଳରେ ସମ୍ବଲପୁର ହିତୈଷିଣୀ ପତ୍ରିକାରେ ଅନେକ ସାହିତ୍ୟିକ କୃତି ପ୍ରକାଶ ପାଇଥିଲା । ଆଜି ଯେଉଁମାନେ ହିତୈଷିଣୀର ବରିଷ୍ଠ ଲେଖକ ଥିଲେ ସେମାନଙ୍କ ମଧ୍ୟରେ ଫକୀରମୋହନ, ରାଧାନାଥ ଓ ମଧୁସୂଦନ ଅନ୍ୟତମ ।

ସମ୍ବଲପୁର ହିତୈଷିଣୀର ପୃଷ୍ଠପୋଷକ ଥିଲେ ବାମଣ୍ଡାଧିପତି ସାର ସୁଢ଼ଳଦେବ । ସେତେବେଳେ ସମ୍ବଲପୁର ଓଡ଼ିଶା ବାହାରେ ଥିଲେ ମଧ୍ୟ ହିତୈଷିଣୀ ଓଡ଼ିଶାରେ ଅତି ପରିଚିତ ଲାଭକରିଥିଲା ଗୁଣାତ୍ମକ ଦୃଷ୍ଟିରୁ ।

ନନ୍ଦକିଶୋରଙ୍କ ସମ୍ବଲପୁର ରହଣୀ ସେଠିକାର ପ୍ରଖ୍ୟାତନାମା କବି ଗଙ୍ଗାଧରଙ୍କୁ ନିକଟତମ କରାଇପାରିଥିଲା । ତାହା ମଧ୍ୟ ସ୍ୱାଭାବିକ ଜଣେ ସାହିତ୍ୟିକ ଯେ କୌଣସି ସ୍ଥାନକୁ ଯାଉନା କାହିଁକି ପ୍ରଥମେ ତାହାର ସମଚିନ୍ତାଧାରାସମ୍ପନ୍ନ ବ୍ୟକ୍ତିଙ୍କୁ ଖୋଜେ । ସାହିତ୍ୟିକ ଖୋଜେ ସାହିତ୍ୟିକକୁ-ସାହିତ୍ୟପ୍ରେମୀମାନଙ୍କୁ । ତେଣୁ ନନ୍ଦକିଶୋର ମେହେରକବିଙ୍କୁ ଖୋଜି ବାହାର କରିବାପାଇଁ ଯତ୍ନବାନ୍ ହୋଇଥିବେ ନିଶ୍ଚୟ ।

ଉଭୟ କବିଙ୍କ ମହାମିଳନ ଉଭୟଙ୍କୁ ସେଇ ଏକ ଯାତ୍ରା ପଥରେ ଦୀର୍ଘପଥ ଅତିକ୍ରମ କରାଇବାକୁ ସାହାଯ୍ୟ କରିଥିଲା । ଉଭୟେ ଉଭୟଙ୍କ ସାହିତ୍ୟ ସୃଷ୍ଟିର ଆଲୋଚନା ତଥା ସମାଲୋଚନା କରୁଥିଲେ ।

ସେତେବେଳକୁ ମେହେର କବିଙ୍କ "ଇନ୍ଦୁମତି" "କୀଚକ ବଧ" ଓ "ଅହଲ୍ୟାସ୍ତବ" ସମ୍ପୂର୍ଣ୍ଣ ରୂପ ପାଇ ସାରିଥିଲା । ତିନୋଟି ମାନସ ସନ୍ତାନର ପିତୃତ୍ୱ ଅର୍ଜନ କରିସାରିବା ପରେ ପରେ ଏକ ପ୍ରକାର ମାନସିକ କ୍ଲାନ୍ତି ଅନୁଭବ କରୁଥିଲେ କବି ଗଙ୍ଗାଧର । ଲେଖନୀ ତାଙ୍କର ସତେ ଯେମିତି କ୍ଲାନ୍ତ ହୋଇଯାଇଥିଲା । କିନ୍ତୁ ତାହାଥିଲା ସାମୟିକ । ସେ ସାମୟିକ କ୍ଲାନ୍ତି ଦୂର ହୋଇଥିଲା ନନ୍ଦକିଶୋରଙ୍କ ସାହାଯ୍ୟ ପାଇବା ପରେ ପରେ । ପଲ୍ଲୀକବିଙ୍କ କାଉଁରୀ କାଠିର ସ୍ପର୍ଶ ସ୍ୱଭାବ କବିଙ୍କ ପାଇଁ ଥିଲା ପ୍ରେରଣାର ଉତ୍ସ । ସେ କାଉଁରୀ କାଠି ନ ଥିଲା କେଉଁ ଏକ ମଶାଣୀର ହାଡ଼—ତାହାଥିଲା କେବଳ ସାହିତ୍ୟ ଆଲୋଚନା । ଉଭୟଙ୍କ କାବ୍ୟକୃତିର ସଂକ୍ଷିପ୍ତ ପର୍ଯ୍ୟାଲୋଚନା ଓ ନୂତନ ଲେଖାପାଇଁ ପ୍ରେରଣା ।

ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ଏକ ଶ୍ରେଷ୍ଠକାବ୍ୟ "ତପସ୍ୱିନୀ"ର ରଚନା ନନ୍ଦକିଶୋରଙ୍କ ସମ୍ବଲପୁର ରହଣୀ କାଳ ମଧ୍ୟରେ ହିଁ ସମାପିତ ହୋଇଥିଲା । ମେହେରଙ୍କ ମୃତ କଳମରେ ଜୀବନ୍ୟାସ ଦେଇଥିଲେ ପଲ୍ଲୀକବି । ବାରମ୍ବାର ଅନୁରୋଧ ତଥା ପ୍ରବର୍ତ୍ତନାର ପରିଣାମ ସ୍ୱରୂପ ମାତ୍ର ଗୋଟିଏ ସର୍ଗ ଲେଖି କେଉଁ ସୁଦୂର ଅତୀତରୁ ବନ୍ଦ ରହିଥିବା ମେହେରଙ୍କ ଆଉ ଏକ ଶ୍ରେଷ୍ଠକାବ୍ୟ 'ପ୍ରଣୟ ବଲ୍ଲରୀ' ମଧ୍ୟ ସମ୍ପୂର୍ଣ୍ଣ ହୋଇଥିଲା । ନନ୍ଦକିଶୋର ଥିଲେ ଗଙ୍ଗାଧରଙ୍କ ପାଇଁ ପ୍ରେରଣାର ଉତ୍ସ । ସମ୍ବଲପୁରରେ ଅଳ୍ପରହଣୀ

କାଳ ମଧ୍ୟରେ ଗଙ୍ଗାଧରଙ୍କ ଲେଖଣୀକୁ କର୍ମମୁଖର କରାଇ ପାରିବା ଥିଲା ତାଙ୍କର ଏକ ଶ୍ରେଷ୍ଠ କୃତିତ୍ୱ । ଗଙ୍ଗାଧରଙ୍କ ପୂର୍ବଖଣ୍ଡ କବିତା ସବୁର ଏକ ସଂକଳନ କରାଇ ତାର ମୁଖବନ୍ଧ ନିଜେ ଲେଖିଥିଲେ । କେବଳ ସେତିକି ନୁହେ ଉକ୍ତ ପୁସ୍ତକର ପ୍ରକାଶନ ପାଇଁ ମଧ୍ୟ ନିଜ ତରଫରୁ ଚେଷ୍ଟା କରିଥିଲେ ।

ସେଠାକାର ଜଣେ ବ୍ୟବସାୟୀଜନୀ ଶ୍ରୀଲକ୍ଷ୍ମୀ ନାରାୟଣ ମିଶ୍ର ଥିଲେ ତାଙ୍କର ବନ୍ଧୁ । ନନ୍ଦକିଶୋର ତାହାଙ୍କୁ ପ୍ରବର୍ତ୍ତାଇ ଥିଲେ ମେହେର କବିଙ୍କ "କବିତା କଲ୍ଲୋଳର" ପ୍ରକାଶନ ଭାର ସେ କରିବା ପାଇଁ । ସେଥିରେ ସେ କୃତକାର୍ଯ୍ୟ ମଧ୍ୟ ହୋଇଥିଲେ ।

ସମ୍ବଲପୁର ରହଣୀମଧ୍ୟରେ କବି ବଙ୍ଗଳାର ବିଖ୍ୟାତ କବି କାମିନୀରାୟଙ୍କ ସଂସ୍ପର୍ଶରେ ଆସିଥିଲେ । ବଙ୍ଗଳାର ଶ୍ରେଷ୍ଠ ଭାଷା ତତ୍ତ୍ୱବିତ୍ ସ୍ୱର୍ଗତ ବିଜୟ ଚନ୍ଦ୍ର ମଜୁମଦାରଙ୍କ ସହିତ ମଧ୍ୟ ସଂପର୍କ ସ୍ଥାପନ କରିପାରିଥିଲେ ।

ସେତେବେଳେ ସୋନପୁର ମହାରାଜ । ବୀର ମିତ୍ରୋଦୟ ସିଂହ ଦେବଙ୍କ ସଂସ୍ପର୍ଶରେ ମଧ୍ୟ ଆସିଥିଲେ ପଲ୍ଲୀକବି । ସୋନପୁରର ରାଜା କବିଙ୍କ ସହିତ ପରିଚିତ ହୋଇ ଓ ତାଙ୍କ ବୁଦ୍ଧିମତାର ପରିଚୟ ପାଇ ଅତ୍ୟନ୍ତ ପ୍ରିତ ହୋଇଥିଲେ । ତାଙ୍କର ସୁମଧୁର ବ୍ୟବହାର ଓ ବସ୍ତୁର ବୁଦ୍ଧିରେ ତାରିଫ୍ କରିବା ସଙ୍ଗେ ସଙ୍ଗେ ସାହିତ୍ୟ ପ୍ରେମୀ ରାଜା ତାହାଙ୍କୁ ନିଜ ଇଷ୍ଟେଟର ଦେଓ୍ୱାନ କରି ଦେବାଲାଗି ନିଜର ଅଭିଳାଷ ପ୍ରକାଶ କରିଥିଲେ । ସେଥିପାଇଁ ମାସିକ ଦରମା ତିନିଶହ ପର୍ଯ୍ୟନ୍ତ ଟଙ୍କା ଦେବାଲାଗି ପ୍ରସ୍ତୁତ ଥିବା କଥା ମଧ୍ୟ ପ୍ରକାଶ କରିଥିଲେ ।

କିନ୍ତୁ ନନ୍ଦକିଶୋରଙ୍କ ସୁଧାମୟ କଣ୍ଠରେ ସେ ପ୍ରସ୍ତାବକୁ ଅସ୍ୱୀକାର କରିଥିଲେ । ଯଦିଓ ମାସିକ ମାତ୍ର ପଞ୍ଚତ୍ରିଂଶ ଟଙ୍କା ସରକାରଙ୍କଠାରୁ ଗ୍ରହଣ କରି ଜୀବିକା ନିର୍ବାହ କରୁଥିଲେ ତଥାପି ତାହାକୁ ତ୍ୟାଗ ନ କରିବା ଅଭିଳାଷ ତାଙ୍କର ଜଣାଇ ଦେଇଥିଲେ ସୋନପୁର ମହାରାଜଙ୍କୁ ।

ସମ୍ବଲପୁର ରହଣୀ ଭିତରେ ଯେଉଁ କେତେକ କବିତା ରଚନା କରିଥିଲେ ତାହା ମଧ୍ୟରେ ସମ୍ବଲପୁରର ସ୍ୱର୍ଗତ ରାମଚନ୍ଦ୍ର ଭଞ୍ଜ ସୂର୍ଯ୍ୟମୁଖୀ ଫୁଲ, ବର୍ଷା ପ୍ରଭୃତି ଉଲ୍ଲେଖ ଯୋଗ୍ୟ ।

ପଲ୍ଲୀକବିଙ୍କ ମାତ୍ର ଗୋଟିଏ ବର୍ଷରୁ କମ୍ ସମୟ ଅତିବାହିତ ହୋଇଥିଲା ବର୍ତ୍ତମାନ ଓଡ଼ିଶାର ପଶ୍ଚିମାଞ୍ଚଳ ସମ୍ବଲପୁରରେ ।

## ପୁଣି କାଳିଆ ଲେଉଟିଲା

ମାତ୍ର ଗୋଟିଏ ବର୍ଷ ସମ୍ବଲପୁରରେ ଅତିବାହିତ ହେବା ପୂର୍ବରୁ ନନ୍ଦକିଶୋର ବଦଳୀ ଆଦେଶ ପାଇଥିଲେ । ବଦଳୀ ହୋଇଥିଲେ ସେହି ପୁରାତନ ସ୍ଥାନ କଟକ ଟ୍ରେନିଂ ସ୍କୁଲ ।

କିନ୍ତୁ ସେଠାରେ ମଧ୍ୟ ରହିପାରି ନ ଥିଲେ ଦୀର୍ଘ ଦିନପାଇଁ । ଦୁଇଟି ମାସର ସମୟ ସୀମା ସେହି ସ୍କୁଲପାଇଁ ଯଥେଷ୍ଟ ଥିଲା । ୧୯୧୨ ମସିହାରେ ସେଠାରୁ ପୁଣି ବଦଳୀ ହୋଇ ନୂତନ କର୍ମକ୍ଷେତ୍ର ବାଲେଶ୍ୱର ଜିଲ୍ଲା ସ୍କୁଲରେ ପ୍ରଧାନ ଶିକ୍ଷକ ହୋଇ ଯୋଗ

ଦେଇଥିଲେ । ବାଲେଶ୍ୱରରେ ରହିଥିଲେ ଦୀର୍ଘ ତିନିବର୍ଷ । କିନ୍ତୁ ସମସ୍ତ ସମୟ ଜିଲ୍ଲା ସ୍କୁଲରେ ପ୍ରଧାନ ଶିକ୍ଷକ ଭାବେ ଅତିବାହିତ ହୋଇ ନ ଥିଲା । ଉକ୍ତକାର୍ଯ୍ୟ କରିଥିଲେ ମାତ୍ର ବର୍ଷକ ପାଇଁ । ତା ପରେ ପରେ ପୁଣି ଏକ ନିଯୁକ୍ତ ପଦ ପାଇଥିଲେ । କର୍ମର ବଦଳୀ ହୋଇଥିଲେ ମଧ୍ୟ କର୍ମକ୍ଷେତ୍ରର ବଦଳୀ ହୋଇ ନ ଥିଲା । ଶିକ୍ଷକତାରୁ ଯାଇ ପୁଣି ବାଲେଶ୍ୱର ଜିଲ୍ଲା ସ୍କୁଲ ସମୂହର ଡେପୁଟି ଇନସ୍ପେକ୍‌ଟର ହିସାବରେ କାର୍ଯ୍ୟ କରିଥିଲେ ୧୯୧୭ ମସିହା ଫେବ୍ରୁଆରୀ ମାସ ପର୍ଯ୍ୟନ୍ତ ।

ସମ୍ବଲପୁର ଯିବା ପରେ ପରେ ଯେପରି ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ସହ ଘନିଷ୍ଠତା ଜନ୍ମାଇବା ପରି ପଲ୍ଲୀକବି ବାଲେଶ୍ୱର ଯିବା ପରେ ପରେ ବ୍ୟାସକବି ଫକୀରମୋହନଙ୍କ ସହିତ ଆତ୍ମୀୟ ବନ୍ଧନରେ ବାନ୍ଧିହୋଇ ପଡ଼ିଥିଲେ । ଫକୀରମୋହନ ସେତେବେଳକୁ କର୍ମଜୀବନରୁ ଅବସର ନେଇ ବୃଦ୍ଧାବସ୍ଥା କେବଳ ଅତିବାହିତ କରୁଥିଲେ ବାଲେଶ୍ୱରରେ । ତାଙ୍କର ପ୍ରଶସ୍ତ ବାସଭବନରେ ସେ ଥିଲେ ଏକାକୀ । ତେଣୁ ଏକାକୀତ୍ୱକୁ ଦୂର କରିବା ପାଇଁ ସେ ନନ୍ଦକିଶୋରଙ୍କୁ ସାଦର ଆମନ୍ତ୍ରଣ ଜଣାଇ ଥିଲେ ଏକାଠି ରହିବା ଲାଗି ।

ସେ ନିମନ୍ତ୍ରଣ ନନ୍ଦକିଶୋର ଗ୍ରହଣ କରିବାକୁ କୁଣ୍ଠା କରିବାର କୌଣସି କାରଣ ନ ଥିଲା ବରଂ ସେଥିରେ ଅତ୍ୟନ୍ତ ପ୍ରୀତ ହୋଇଥିଲେ ସେ । କାରଣ ଫକୀରମୋହନ ତାଙ୍କଠାରୁ ବୟସରେ ବହୁତ ବଡ଼ଥିଲେ; ଥିଲେ ଗୁରୁସ୍ଥାନୀୟ । ତାଙ୍କର ପୁତ୍ର ଅଧ୍ୟାପକ ମୋହିନୀମୋହନ ପ୍ରାୟତଃ ନନ୍ଦକିଶୋରଙ୍କ ସମସାମୟିକ । ସେହି ଦୃଷ୍ଟିରୁ ନନ୍ଦକିଶୋର ଗଭୀର ଶ୍ରଦ୍ଧା ତଥା ଭକ୍ତି କରୁଥିଲେ ଫକୀରମୋହନଙ୍କୁ ।

ତାଙ୍କର ଘରେ ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ ଓଡ଼ିଶାର ଦୁଇଜଣ ପ୍ରଖ୍ୟାତନାମା ସାହିତ୍ୟିକ ଏକାଠି ବସି ସାହିତ୍ୟ ଆଲୋଚନାରେ ବ୍ୟାପୃତ ରହୁଥିଲେ । ଅନେକ ସମୟରେ ସେମାନଙ୍କ ଆଲୋଚନା ଜାତୀୟତାକୁ କିପରି ବଞ୍ଚାଇ ରଖାଯାଇପାରିବ, ସାହିତ୍ୟର ସମୃଦ୍ଧି ପାଇଁ କଣ କରାଯିବା ଉଚିତ ଇତ୍ୟାଦି ଆଲୋଚନା ବ୍ୟତୀତ ଉଭୟଙ୍କର ସାହିତ୍ୟ ସୃଷ୍ଟି ସମ୍ପର୍କରେ ଆଲୋଚନା ପ୍ରଧାନ ଭୂମିକା ଗ୍ରହଣ କରୁଥିଲେ ।

ଫକୀରମୋହନ ପଲ୍ଲୀକବି ନନ୍ଦକିଶୋରଙ୍କୁ ଠିକ୍ ପୁତ୍ରବତ୍ ସ୍ନେହ କରୁଥିଲେ । ଉଭୟଙ୍କ ମିଳନ ସମ୍ପର୍କରେ ଫକୀରମୋହନ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ।

"ମୁଁ ଏକାକୀ ଥିବା ସମୟରେ କବି ନନ୍ଦକିଶୋର ବଳ ବାଲେଶ୍ୱର ଜିଲ୍ଲା ସ୍କୁଲର ହେଡ୍‌ମାଷ୍ଟର ନିଯୁକ୍ତ ହୋଇ ଆସିଲେ । ଦୁଇଜଣ ଏକ ସଙ୍ଗରେ ବାସ କରିବାକୁ ଲାଗିଲୁ । ଗ୍ରୀଷ୍ମକାଳରେ ଘର ଅଗଣାରେ ଯୋଡ଼ିଏ ଆରାମୀ କୁରୁଚି ପକାଇ ସନ୍ଧ୍ୟାଠାରୁ ରାତି ୯-୧୦ ଘଣ୍ଟା ପର୍ଯ୍ୟନ୍ତ ଗଳ୍ପ କରୁ । ଗଳ୍ପର ଅଧିକାଂଶ ଉତ୍କଳ ସାହିତ୍ୟ ବିଷୟରେ । ଆମ୍ଭେମାନେ ଏକ ସଙ୍ଗରେ ଥିବାବେଳେ ଅନେକ ଗଳ୍ପ ଓ କବିତା ରଚନା କରିଅଛୁ । କିଛିକାଳ ମୋ ସହିତ ରହି ନନ୍ଦକିଶୋରବାବୁ ଅନ୍ୟତ୍ର ବଦଳିଗଲେ । ସେ ପ୍ରକାର ପବିତ୍ର ଓ ସୁଖମୟ ନୈଶ ମିଳନ ମୋ ଅଦୃଷ୍ଟରେ ଆଉ ଘଟିବ ନାହିଁ । ଉଭୟେ ସାହିତ୍ୟ ଚର୍ଚ୍ଚାରେ ଲାଗି ରହିଥାଉ । ଉଭୟର କାମନା ମାତୃଭାଷାର ଉନ୍ନତି । ପୁଣି ଉଭୟେ "ମନ୍ଦଃକବି ଯଶପ୍ରାର୍ଥୀ" । ମୋ ପକ୍ଷରେ ସେହି ସୌଭାଗ୍ୟର ସମୟ ଏତେବେଳକେ ଅବସାନ ହୋଇଅଛି ।

ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର ସ୍ରଷ୍ଟା ଫକୀରମୋହନଙ୍କ ସହ ସାଂଘ ମିଳନର କଥାବାର୍ତ୍ତା କରିବା ବେଳେ ଥରେ ନନ୍ଦକିଶୋର ଏକ ବାସ୍ତବ ଘଟଣା ଆଳାପ ଆଲୋଚନାର ପରିସର ଭିତରକୁ ଆଣିଥିଲେ । ଉକ୍ତ ଘଟଣା ଥିଲା ଏକ ଦୁର୍ଘଟଣା । ସେହି ଦୁର୍ଘଟଣାରେ ଶିକାର ହୋଇଥିଲେ ପଲ୍ଲୀକବିଙ୍କର ଜଣେ ସାଙ୍ଗ । ଦୁର୍ଘଟଣାର ବିଷୟବସ୍ତୁ ଥିଲା ଜଣେ ମାମୁଁଙ୍କର ଭଣଜା ପ୍ରତି ଅତ୍ୟାଚାର ଏବଂ ଭଣଜା ଜଣକ ହିଁ କବିଙ୍କର ବନ୍ଧୁ ।

ନନ୍ଦକିଶୋରଙ୍କ ଉକ୍ତ ଘଟଣାର ବିବରଣୀ ବୁଦ୍ଧି ଫକୀରମୋହନଙ୍କ ଚିନ୍ତାରାଜ୍ୟରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା । କାରଣ ଅତ୍ୟନ୍ତ ମର୍ମନ୍ତୁଦ ଥିଲା ଉକ୍ତ କାହାଣୀର ବିଷୟବସ୍ତୁ । ଜଣେ ସ୍ରଷ୍ଟାର ମାନସରାଜ୍ୟରେ ଆଲୋଡ଼ନ ସୃଷ୍ଟି କରିବା ଅଭିଜ୍ଞତା ଯେ ହେନେନା ହେନେ ନୂତନ ସୃଷ୍ଟି ହୋଇ ଜନ୍ମନେବ ସେଥିରେ ସନ୍ଦେହ ନାହିଁ । ତାହା ହିଁ ହୋଇଥିଲା ।

ସେହି ବାସ୍ତବ କାହାଣୀକୁ ଅବଲମ୍ବନ କରି ଫକୀରମୋହନ ରଚନା କରିଥିଲେ ତାଙ୍କର ବିଖ୍ୟାତ ଉପନ୍ୟାସ "ମାମୁଁ" । ମାମୁଁ ଉପନ୍ୟାସର ସୃଷ୍ଟି ମୂଳରେ ଯେ ନନ୍ଦକିଶୋରଙ୍କ ଅବଦାନ ବହୁତ ବେଶି ସେ କଥା ଅବଶ୍ୟ ସ୍ୱୀକାର୍ଯ୍ୟ । ଠିକ୍ ସେମିତି ପଲ୍ଲୀକବିଙ୍କ ପ୍ରସିଦ୍ଧ ଉପନ୍ୟାସ "କନକଲତା" ରଚନା ମୂଳରେ ଫକୀରମୋହନଙ୍କ ପ୍ରେରଣା ବହୁତ ବେଶି ।

ଥରେ ନନ୍ଦକିଶୋର ବାଲେଶ୍ୱରର ଶିକ୍ଷା ବିଭାଗର ଡେପୁଟି ଇନସ୍ପେକ୍ଟରଭାବେ ସ୍କୁଲ ପରିଦର୍ଶନ କରିବା ଉଦ୍ଦେଶ୍ୟରେ ଖୁନ୍ଦବାଲି ଅଞ୍ଚଳ ପରିଦର୍ଶନରେ ଯାଇଥିଲେ । ସାହିତ୍ୟିକ ଜୀବନରେ

ଭାବପ୍ରବଣତା ହିଁ ସବୁଠାରୁ ଗୁରୁତ୍ୱ ପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ଭାବନା ରାଜ୍ୟର ଆଲୋଡ଼ନକୁ ପ୍ରକାଶ କରିପାରିଲେ ହିଁ ସେ ପାଏ ଶାନ୍ତି । ସେହିପରି ସେ ଅଞ୍ଚଳରୁ ଫେରିବା ବେଳକୁ ମଫସଲରେ ରଚନା କରି ଆଣିଥିଲେ ଖଣ୍ଡିଏ ଗଳ୍ପ ଆଖଣ୍ଡଳମଣିଙ୍କ ଦର୍ଶନ । ଗସ୍ତରୁ ଫେରିବା ପରେ ପରେ ତାହା ଫକୀରମୋହନଙ୍କ ନିକଟରେ ପାଠ କରିଥିଲେ ।

ଔପନ୍ୟାସିକ ଫକୀରମୋହନଙ୍କ ହୃଦବୋଧ ହୋଇଥିଲା ତାହା ଏକ ଉପନ୍ୟାସ ହୋଇପାରିବ । ମନକଥା ଆଲୋଚନା ପ୍ରସଙ୍ଗରେ ସେ ପ୍ରକାଶ କରିଥିଲେ ଓ ପରାମର୍ଶ ଦେଇଥିଲେ ଉକ୍ତ ଗଳ୍ପକୁ ଉପନ୍ୟାସ ଆକାରରେ ରଚନା କରିବାକୁ ।

ସେ ଗଳ୍ପ ଉପନ୍ୟାସର ରୂପ ନେଇଥିଲା "କନକଲତା" ୧୯୧୪ ମସିହାରେ ।

ସେ ଉପନ୍ୟାସର ବିଷୟବସ୍ତୁ ଏତେ ପ୍ରଭାବଶାଳୀ ମନେ ହୋଇଥିଲା ଯେ, ଓଡ଼ିଶାର ଚଳଚ୍ଚିତ୍ର ପ୍ରଯୋଜକମାନେ ତାହାକୁ ଚଳଚ୍ଚିତ୍ରର କାହାଣୀ ରୂପେ ଗ୍ରହଣ କରିବା ପାଇଁ ଆଗ୍ରହାନ୍ୱିତ ହୋଇ ଉଠିଥିଲେ ।

ଆଜି ଓଡ଼ିଶାର ଚଳଚ୍ଚିତ୍ର ପ୍ରେକ୍ଷାଳୟଗୁଡ଼ିକରେ ଓଡ଼ିଆ ଚଳଚ୍ଚିତ୍ର "କନକଲତା" ଅଗଣିତ ଦର୍ଶକ ନନ୍ଦକିଶୋରଙ୍କ ସହ ପରିଚିତ କରାଇଛି । ସେହି ବାଲେଶ୍ୱରର ପ୍ରତ୍ୟକ୍ଷ ଅନୁଭୂତିର ସାହିତ୍ୟିକ ନିର୍ଯ୍ୟାସ କବିଙ୍କ ଆଉ ଗୋଟିଏ ଗଳ୍ପ "ଲକ୍ଷ୍ମୀ" । ତାହା ମଧ୍ୟ ଏକ ବାସ୍ତବ ଘଟଣା ଉପରେ ପର୍ଯ୍ୟବେଶିତ ।

ଥରେ ଗସ୍ତରୁ ଫେରିବା ପରେ ସାଂଧ୍ୟ ଆଲୋଚନାରେ ଫକୀରମୋହନଙ୍କ ଆଗରେ ଗୋଟିଏ ଘଟଣାର ବର୍ଣ୍ଣନା କରିଥିଲେ ନନ୍ଦକିଶୋର । ବିଷୟବସ୍ତୁର ଝଲକ ଏତେବେଶୀ ତେଜସ୍ୱାନ ଥିଲା ଯେ ଉଭୟ କବିଙ୍କ ମନରେ ତାହା ରେଖାପାତ କରିଥିଲା । ସେହି କାହାଣୀର ଅବଲମ୍ବନରେ ଫକୀରମୋହନ ଲେଖିଥିଲେ ଗଳ୍ପ "ମାଧ ମାହାନ୍ତିଙ୍କ କନ୍ୟାସୁନା" ଓ ନନ୍ଦକିଶୋର ଲେଖିଥିଲେ ଗଳ୍ପ "ଲକ୍ଷ୍ମୀ" ।

ନନ୍ଦକିଶୋର ଓ ଫକୀରମୋହନଙ୍କ ସେହି କେତେଦିନର ମିଳନ ଓଡ଼ିଆ ସାହିତ୍ୟ ଇତିହାସପାଇଁ ଅତି ଉପାଦେୟ ଥିଲା । କାରଣ ଉଭୟେ ସ୍ରଷ୍ଟା ସୃଷ୍ଟି କରିବା ଲାଗି ସମର୍ଥ ହୋଇଥିଲେ ଓଡ଼ିଆ ସାହିତ୍ୟର କେତୋଟି ଅମୂଲ୍ୟ ସୃଷ୍ଟି । ଦୀର୍ଘଦିନର ଅପୂର୍ଣ୍ଣ ହୋଇ ରହିଥିବା ଫକୀରମୋହନଙ୍କ "ଅପୂର୍ବ ମିଳନ"ର ପୂର୍ଣ୍ଣତା ପ୍ରାପ୍ତି ହୋଇଥିଲା ସେହି ସମୟରେ ନନ୍ଦକିଶୋରଙ୍କ ପ୍ରେରଣା ଯୋଗୁଁ । ତାହାହିଁ ବ୍ୟାସକବିଙ୍କ ବିଖ୍ୟାତ ଉପନ୍ୟାସ "ଲଛମା" ।

କାଳିଆ ପୁଣି ଲେଉଟି ଆସିଥିଲା ତାର ପ୍ରିୟ ପରିଚିତ ସହରକୁ ।

ବାଲେଶ୍ୱରରୁ ୧୯୧୭ ମସିହାରେ ନନ୍ଦକିଶୋର ବଦଳି ହୋଇ ଆସିଥିଲେ କଟକ । ଗୃହକର୍ତ୍ତା, ସେଇ ଡେପୁଟି ଇନସ୍ପେକ୍ଟର । କିନ୍ତୁ ମାତ୍ର ମାସ ଛବେଟି ଭିତରେ ତାଙ୍କର ପଦୋନ୍ନତି ହୋଇଥିଲା । ସେ ହୋଇଥିଲେ ଶିକ୍ଷା ବିଭାଗର ଆସିଷ୍ଟାଣ୍ଟ ଇନସ୍ପେକ୍ଟର । ତାଙ୍କର କର୍ମସ୍ଥଳୀ ଥିଲା କଟକ । ଏଥର କଟକରେ ପ୍ରାୟ ୫ ବର୍ଷ କାଳ ଅତିବାହିତ କରିଥିଲେ ସେ ଏକାଦିକ୍ରମେ ।

ପରିଦର୍ଶକ କର୍ମଗୃଷ୍ଣ ହିସାବରେ ତାହାଙ୍କ ପ୍ରଧାନ କାର୍ଯ୍ୟଥିଲା ଶିକ୍ଷକମାନଙ୍କ କାର୍ଯ୍ୟ ପରିଦର୍ଶନ । ତାଙ୍କର କର୍ତ୍ତବ୍ୟନିଷ୍ଠା ଏକାଦିକ୍ରମେ ଓଡ଼ିଶାର ଶିକ୍ଷକ ମହଲ ତଥା ଉପରିସ୍ଥ ହାକିମମାନଙ୍କୁ ନଜର କରିପାରିଥିଲା । ସମସ୍ତଙ୍କର ପ୍ରଶଂସାର ପାତ୍ର ହୋଇଥିଲେ ସେ ।

ସାହିତ୍ୟିକ କମ୍ବା ସାହିତ୍ୟପ୍ରେମିଟିଏ ପାଖରେ ପାଇଗଲେ ଆରମ୍ଭ ହୋଇ ଯାଉଥିଲା ସାହିତ୍ୟ ବିଷୟର ଆଲୋଚନା । ତାହା ସାହିତ୍ୟିକମାନଙ୍କର ଏକ ସାଧାରଣ ଲକ୍ଷଣ । ଥରେ କଟକରେ ଏହିପରି ସକାଳବେଳା ଆଲୋଚନା ପ୍ରସଙ୍ଗରେ ଶିଶୁ ସାହିତ୍ୟ ସମ୍ପର୍କରେ ଆଲୋଚନା ଚାଲିଥିଲା । ଶିଶୁ ସଙ୍ଗୀତର ଅଭାବ ଅନୁଭୂତ ହେଉଥିଲା ବୋଲି ଶେଷ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ସେମାନେ ଥାଉଁ ଥାଉଁ ଓଡ଼ିଆ ସାହିତ୍ୟର କାହିଁକି ଶିଶୁ ସଙ୍ଗୀତର ଅଭାବ ହେବ ?

ଆଲୋଚନା ଆସର ଶେଷହେବା ସଙ୍ଗେ ସଙ୍ଗେ କବି କଲମ ତତ୍ପର ହୋଇ ଉଠିଥିଲା । ଅଭିମାନୀ କବି ଅଭିମାନ ଜର୍ଜରିତ ହୋଇ ଉଠିଥିଲେ । ସଙ୍ଗେ ସଙ୍ଗେ କଲମ ଧରି ବସି ଯାଇଥିଲେ ଶିଶୁ ସଙ୍ଗୀତ ରଚନା ଲାଗି । ଗାଧୁଆ ନାହିଁ, ଖିଆପିଆ ନାହିଁ, କ୍ଲାନ୍ତ ନାହିଁ । ଏକାଦିକ୍ରମେ ଚାରି ପାଞ୍ଚ ଘଣ୍ଟା ବସିଯାଇଥିଲେ, ଗୋଟିଏ ପରେ ଗୋଟିଏ ସଙ୍ଗୀତ ଲେଖି । ଉଦ୍ଦେଶ୍ୟ ଶିଶୁମାନଙ୍କ ମନୋରଞ୍ଜନ' କରିବା । ଅପରାହ୍ନ ଛଅଟା ବେଳକୁ ଉଠିଲେ । କବିଙ୍କ ମାନସ କନ୍ୟା "ନାନା ବାୟା" ଗୀତ ହୋଇ ଜନ୍ମ ନେଇଥିଲା ।

କବିତାଗୁଡ଼ିକ ଏକାଦିକ୍ରମେ ଲେଖାଯାଇଥିଲେ ମଧ୍ୟ ଗୋଟିଏ ଦିନରେ ମାତ୍ର ଗୋଟିଏ ଥର ବସିବା ଭିତରେ ଲେଖିଥିଲେ

ମଧ୍ୟ, ସେଥି ମଧ୍ୟରୁ ଅନେକଟା ଥିଲା ଉଚ୍ଚକୋଟିର । ସେଥିରୁ କେତେକ କବିତା କଲିକତା ବିଶ୍ୱବିଦ୍ୟାଳୟଦ୍ୱାରା ପ୍ରକାଶିତ ପାଠ୍ୟଗୁଡ଼ିକ ସାହିତ୍ୟ ସଂଗ୍ରହରେ ସନ୍ନିବେଶିତ ହୋଇଥିଲା । ସଂକଳନ କରିଥିଲେ ସ୍ୱର୍ଗତ ବିଜୟ ଚନ୍ଦ୍ର ମଜୁମଦାର । ମଜୁମଦାର ମହାଶୟ କବିଙ୍କ ସଂପର୍କରେ ଲେଖିବାକୁ ଯାଇ, ତାଙ୍କର ପରିଚୟ ଦେବାକୁ ଯାଇ ଉଚ୍ଚ ପ୍ରଶଂସା କରିଥିଲେ ।

କଟକ ରହଣୀକାଳ ମଧ୍ୟରେ ପଣ୍ଡିତ ଗୋପବନ୍ଧୁଙ୍କ ସହିତ ତାଙ୍କର ପରିଚୟ ତଥା ଘନିଷ୍ଠତା ହୋଇଥିଲା । ସେତେବେଳକୁ ସାହିତ୍ୟିକ ହିସାବରେ ଓଡ଼ିଶାରେ ପ୍ରତିଷ୍ଠା ଲାଭ କରିସାରିଥିଲେ ନନ୍ଦକିଶୋର । ଗୋପବନ୍ଧୁ ଥିଲେ ବିହାର ଓଡ଼ିଶା କାଉନ୍‌ସିଲର ସଭ୍ୟ । ଓଡ଼ିଶାର ଶିକ୍ଷା ସମସ୍ୟା ଆଲୋଚନା କରିବାପାଇଁ ଅନେକ ସମୟରେ ଗୋପବନ୍ଧୁ ଆସୁଥିଲେ ନନ୍ଦକିଶୋରଙ୍କ ଉଗରପଡ଼ାସ୍ଥିତ ବାସଭବନକୁ । କାରଣ ଶିକ୍ଷାବିଭାଗରେ ପଲ୍ଲୀକବିଙ୍କ ଅନେକ ଅନେକ ଅଭିଜ୍ଞତା ଥିଲା ଓ [illegible]ନ ପାଇଁ ସେ ଶୃକସ୍ୱକ୍ଷେତ୍ରରେ ପ୍ରବେଶ କରିଥିଲେ ଜଣେ ଶିକ୍ଷକଭାବେ ଓ ସେହିଦିନଠାରୁ ବିଭିନ୍ନ ଦାୟିତ୍ୱ ସେ ବହନ କରିଆସିଥିଲେ ସେ ପର୍ଯ୍ୟନ୍ତ ।

ସେତେବେଳକୁ ପୃଥିବୀରେ ପ୍ରଥମ ବିଶ୍ୱଯୁଦ୍ଧର ପ୍ରଳୟଙ୍କରୀ ଘନଘଟା । ଓଡ଼ିଶା ଶିକ୍ଷାବିଭାଗର ଇନସପେକ୍ଟର ଥିଲେ ଡବ୍ଲୁ. ଭି. ଡଉକ୍ । ସେ ଥିଲେ ଏକାଧାରରେ ଜଣେ ସୈନିକ ମଧ୍ୟ । ଯୁଦ୍ଧରେ ଯୋଗ ଦେବପାଇଁ ସରକାରୀ ଆହ୍ୱାନକୁ ସେ ପ୍ରତ୍ୟାଖ୍ୟାନ କରିପାରି ନ ଥିଲେ । ଯୁଦ୍ଧକୁ ଚାଲିଯିବା ପରେ ପରେ ଓଡ଼ିଶା ଶିକ୍ଷାବିଭାଗର ଆସିଷ୍ଟାଣ୍ଟ ଇନସପେକ୍ଟର କବି ନନ୍ଦକିଶୋର ତାଙ୍କଠାରୁ ପୂରା ଦାୟିତ୍ୱ ବୁଝିନେବାର କଥା । ନେଇଥିଲେ ମଧ୍ୟ । ଆସିଷ୍ଟାଣ୍ଟ

ଇନସପେକ୍ଟର, ଇନସପେକ୍ଟର ଦାୟିତ୍ୱ ଗ୍ରହଣ କରିବା ପରେ ପରେ କାର୍ଯ୍ୟକଳାପର ପରିସର ମଧ୍ୟ ବୃଦ୍ଧି ପାଇଥିଲା । ନୂତନ ଦାୟିତ୍ୱ ଅନୁସାରେ ତାହାଙ୍କୁ ରାଜ୍ୟର ସମସ୍ତ ଶିକ୍ଷାନୁଷ୍ଠାନକୁ ପରିଦର୍ଶନ କରିବା ତଥା ଶାସନ କରିବାପାଇଁ ତନଖି କରିବା ଦାୟିତ୍ୱ ତାଙ୍କର କାର୍ଯ୍ୟକଳାପ ମଧ୍ୟରେ ପ୍ରଧାନ ଥିଲା ।

କିନ୍ତୁ ଅସ୍ପୃଶ୍ୟଭାବ ମଣିଷମନରୁ ଯାଉଛି କେଉଁଠି ? ରେଭେନ୍‌ସା କଲେଜିଏଟ ସ୍କୁଲର ପ୍ରଧାନ ଶିକ୍ଷକ ଯିଏ ଥିଲେ ତାଙ୍କର ନାମ ଥିଲା ଡବ୍ଲୁ. ଡବ୍ଲୁ. ହେଣ୍ଡରସନ ଓ ସେ ଗ୍ଲାସଗୋ ବିଦ୍ୟାଳୟରୁ ଏମ୍. ଏ. ପାଶ୍ କରିଥିଲେ । ସେ ଜଣେ ଦେଶୀୟ ଲୋକର ଅଧୀନସ୍ଥ ହେବାପାଇଁ କୁଣ୍ଠା ପ୍ରକାଶ କରିଥିଲେ ।

ଦେଶରେ ବିଦେଶୀ ସରକାର, ବିଦେଶୀ ଶାସନ, ବିଦେଶୀ ହାକିମ । ଜଣେ ବିଦେଶୀ ପୁଣି ସ୍କୁଲର ପ୍ରଧାନ ଶିକ୍ଷକ । ତାଙ୍କର ଆପତ୍ତି ତାଙ୍କର ଲୋକେ ଗ୍ରହଣ କରିବେନାହିଁ କିମିତି ? ସେ ଆପତ୍ତି କରିଥିଲେ ଯେ, ଶିକ୍ଷାକ୍ଷେତ୍ରରେ ଯୋଗ୍ୟତା ତାଙ୍କର ଅଧିକ । ଏମ୍. ଏ. ପରୀକ୍ଷାରେ ସେ ପାଶ୍ କରିଛନ୍ତି । ତେଣୁ ବି. ଏ. ପାଶ୍ କରିଥିବା ନନ୍ଦକିଶୋର ତାଙ୍କର ଉପରିସ୍ଥ ହାକିମ ହୋଇପାରିବେ ନାହିଁ ।

ତାହା ହୋଇପାରିଲା ନାହିଁ ।

ନନ୍ଦକିଶୋରଙ୍କ ଶିକ୍ଷାକ୍ଷେତ୍ରରେ ସମସ୍ତ ଅଭିଜ୍ଞତା ଖରାବର୍ଷାପରି କେଜାଣି କେଉଁଠି ଲୁଚିଗଲା ।

ପୁଣି ସେ ଫେରିଆସିଲେ ସହକାରୀ ପରିଦର୍ଶକ ପଦବୀକୁ ।

ତାର କିଛିଦିନ ପରେ ଉକ୍ତ ପଦବୀ ମଧ୍ୟ ଲୋପ ପାଇ ଯାଇଥିଲା ।

# ପୁନଃମୂଷିକୋ ଭବ

ଓଡ଼ିଶା ଶିକ୍ଷାବିଭାଗରୁ ସହକାରୀ ପରିଦର୍ଶକ ପଦବୀ ସରକାରୀ ଆଦେଶରେ ଲୋପ ପାଇଯିବା ପରେ ନନ୍ଦକିଶୋର ପୁଣି ନିଯୁକ୍ତି ପାଇଥିଲେ ସେହି ପୁରାତନ ଶିକ୍ଷକତା ସ୍କୁଲସମୂହର ପରିଦର୍ଶକ କର୍ମସ୍ଥଳୀ ପୁରୀ ଜିଲ୍ଲା ।

୧୯୨୦ ମସିହାରେ ଜଗନ୍ନାଥଧାମ ପୁରୀ କାର୍ଯ୍ୟାଳୟରେ ଯୋଗ ଦେଇଥିଲେ ପଲ୍ଲୀକବି । ଇଂରେଜ ସରକାରଙ୍କ ଅଧୀନରେ ଶିକ୍ଷକତା କରୁଥିଲେ ମଧ୍ୟ ସେ ଥିଲେ ସ୍ୱାଧୀନଚେତା । ସେହି କାରଣରୁ ପଣ୍ଡିତ ଗୋପବନ୍ଧୁଙ୍କ ସହ ତାଙ୍କ ପରିଚୟ ଓ ଘନିଷ୍ଠତା । ପୁରୀ ଆସିବା ପରେ ଗୋପବନ୍ଧୁଙ୍କ ସହିତ ସମ୍ପର୍କ ତାଙ୍କର ବୃଦ୍ଧି ପାଇଥିଲା । ସାହିତ୍ୟ ପ୍ରତି ନନ୍ଦକିଶୋରଙ୍କର ଆଗ୍ରହ ବହୁତ ବେଶି ଥିବା ଦୃଷ୍ଟିରୁ ଗୋପବନ୍ଧୁଙ୍କ ସାହିତ୍ୟ ସୃଷ୍ଟିଗୁଡ଼ିକୁ ଚିହ୍ନି ଚିହ୍ନି କରି ଦେଖିବାର ପ୍ରୟାସ କରୁଥିଲେ ପଲ୍ଲୀକବି ।

ଗୋପବନ୍ଧୁଙ୍କ ସହ ନନ୍ଦକିଶୋରଙ୍କ ସମ୍ପର୍କ ଥିଲା ଆଉ ଗୋଟିଏ ଦୃଷ୍ଟିରୁ । ନନ୍ଦକିଶୋର ଥିଲେ ଓଡ଼ିଶାର ଜଣେ ବିଶିଷ୍ଟ ଶିକ୍ଷକ, ଶିକ୍ଷାବିତ୍ ଓ ଶିକ୍ଷା ପରିଦର୍ଶକ । ଗୋପବନ୍ଧୁ ସେତେବେଳେ ସତ୍ୟବାଦୀର ବକୁଳ କୁଞ୍ଜ କୁଟିରଅଳା ତରୁ ତଳେ ଏକ ନୂତନ ଧରଣର ଶିକ୍ଷାନୁଷ୍ଠାନ ଗଠନକରି ଶିକ୍ଷାକ୍ଷେତ୍ରରେ ଏକ ନୂତନ ପରୀକ୍ଷା ନିରୀକ୍ଷା ଚଳାଉଥିଲେ ।

ସତ୍ୟବାଦୀ ବନବିଦ୍ୟାଳୟ ଗଠନ କରିବା ମୂଳରେ ଗୋପବନ୍ଧୁଙ୍କ ଉଦ୍ଦେଶ୍ୟ ଥିଲା ମଣିଷପରି ମଣିଷ ତିଆରି କରିବା ।

ସେଥିପାଇଁ ବିଦ୍ୟାଳୟକୁ ମଣିଷଗଢ଼ା କାରଖାନା ନାମକରଣ କରିଥିଲେ । ତେବେ ତାଙ୍କର ଅସଲ ଉଦ୍ଦେଶ୍ୟ ଥିଲା ଦେଶପାଇଁ କେବଳ ସରକାରୀ ଚାକିରିଆଦଳଙ୍କ ଆବଶ୍ୟକତା ନାହିଁ ବରଂ ଅଧିକ ଆବଶ୍ୟକ ଦେଶ ସେବକର ଦଳ । ତେଣୁ କପଟି ଭାବରେ ସତ୍ୟବାଦୀ ବନବିଦ୍ୟାଳୟରୁ ଦେଶସେବକମାନେ ବାହାରିବେ । ଦେଶକୁ ପରାଧୀନତାରୁ ମୁକ୍ତ କରିବାପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି କରିବେ ପ୍ରକାରାନ୍ତରେ ସେ ଶିକ୍ଷା ଦିଆଯିବା ଲାଗି କଳ୍ପନା କରିଥିଲେ ଗୋପବନ୍ଧୁ । ସେ ଜାତୀୟବାଦୀ ଚିନ୍ତାଧାରା ଓ ମାନବବାଦୀ ଦୃଷ୍ଟିକୋଣକୁ ପ୍ରଧାନ ସ୍ତମ୍ଭରୂପେ ସତ୍ୟବାଦୀ ଗୋଷ୍ଠୀ ଗ୍ରହଣ କରିଥିଲେ । ସେହି ଉଦ୍ଦେଶ୍ୟରେ ଅନେକ ସମୟରେ କି ପ୍ରକାର ପାଠ୍ୟକ୍ରମ ଗ୍ରହଣ କରାଯିବା ଉଚିତ ଓ ତାକୁ କାର୍ଯ୍ୟକାରୀ କରାଇବା ଲାଗି କି ପନ୍ଥାର ଆବଶ୍ୟକତା ରହିଛି ସେ ସବୁ ବିଷୟ ଆଲୋଚନା କରିବାଲାଗି ଗୋପବନ୍ଧୁ ଶିକ୍ଷାବିତ୍ ନନ୍ଦକିଶୋରଙ୍କ ନିକଟକୁ ଯାଉଥିଲେ ।

ସତ୍ୟବାଦୀର ଶିକ୍ଷା ଯୋଜନା ସମ୍ପର୍କରେ ଆଲୋଚନା କରିବା ସଙ୍ଗେ ସଙ୍ଗେ ଉଭୟ ଜାତୀୟବାଦୀ ନେତାଙ୍କ କଥାବାର୍ତ୍ତା ଲମ୍ବି ଯାଉଥିଲା ଖଣ୍ଡିତ ଓଡ଼ିଶାର ସୀମା ତଥା ଦେଶମିଶ୍ରଣ ସମସ୍ୟା ।

ଗୋଟିଏ ସହରରେ ଉଭୟେ ଥିବା ଯୋଗୁଁ ଉଭୟଙ୍କ ମଧ୍ୟରେ ସହୃଦୟତା ଓ ସମ୍ପର୍କ ବଢ଼ିବା ସ୍ୱାଭାବିକ ।

ସେତିକିବେଳକୁ ଗଣକବି ବୈଷ୍ଣବ ପାଣିଙ୍କ ସହିତ ତାହାଙ୍କ ଘନିଷ୍ଠ ପରିଚୟ ଘଟିଯାଇଥିଲା । ନନ୍ଦକିଶୋରଙ୍କର ଗଣସାହିତ୍ୟ ସୃଷ୍ଟି କରିବାରେ ସେତେବେଳେ ସେ ଥିଲେ ଜଣେ ଅନ୍ତ

ଖ୍ୟାତନାମା ନାଟ୍ୟକାର । ତାହାଙ୍କର ଗୀତିନାଟ୍ୟଗୁଡ଼ିକ ଚମତ୍କାର ଭାବରେ ଜନଗଣଙ୍କ ମଧ୍ୟରେ ପ୍ରଭାବ ବିସ୍ତାର କରିପାରିଥିବା ହେତୁ ଲୋକମାନଙ୍କ ପ୍ରିୟପାତ୍ର ସେ ହୋଇପଡ଼ିଥିଲେ । ପୌରାଣିକ ଆଖ୍ୟାନଗୁଡ଼ିକୁ ଓ ରାମାୟଣ ମହାଭାରତର କାହାଣୀଗୁଡ଼ିକୁ କେନ୍ଦ୍ର କରି ବୈଷ୍ଣବ ପାଣି ରଚନା କରୁଥିଲେ ତାଙ୍କର ଗୀତିନାଟ୍ୟଗୁଡ଼ିକ । ତେବେ ସେଗୁଡ଼ିକ ଗଣସାହିତ୍ୟ ଉପଯୋଗୀ ହୋଇପାରୁଥିଲେ ମଧ୍ୟ ସାଧାରଣ ଜନତାଙ୍କ ମନୋରଞ୍ଜନ କରିପାରୁଥିଲେ ମଧ୍ୟ, ତାଙ୍କର ରଚନାଶୈଳୀ ଓ ଲେଖାଗୁଡ଼ିକର ମାନ ଅତି ଉଚ୍ଚକୋଟିର ଥିଲା । ସେଥିପାଇଁ ସାହିତ୍ୟିକ ନନ୍ଦକିଶୋର ଭଲପାଇ ବସିଥିଲେ ଗଣକବି ବୈଷ୍ଣବ ପାଣିଙ୍କୁ । ଗଣକବିଙ୍କ ଯାହା ଦେଖିବାକୁ ଭଲ ପାଉଥିଲେ ପଲ୍ଲୀକବି ।

ନନ୍ଦକିଶୋର ବିହାର ଓଡ଼ିଶା ସରକାରଙ୍କ ଅଧୀନରେ ଶିକ୍ଷାବିଭାଗରେ ଚାକିରି କରୁଥିଲେ ମଧ୍ୟ ସରକାର ତାହାଙ୍କୁ ଆଉ ଗୋଟିଏ ଅଧିକା ଦାୟିତ୍ୱ ଦେଇଥିଲେ । ଯେତେ ସବୁ ଓଡ଼ିଆ ଭାଷାରେ ପୁସ୍ତକ ଇତ୍ୟାଦି ପ୍ରକାଶ ପାଉଥିଲା ସେସବୁମାନଙ୍କ ସମ୍ପର୍କରେ ସରକାରଙ୍କୁ ଏକ ଗୁପ୍ତ ରିପୋର୍ଟ ଦେବାଲାଗି ବ୍ୟବସ୍ଥା କରିଥିଲେ ସରକାର । ସେହି ସମୟରେ ଗଣକବିଙ୍କ ଗୀତିନାଟ୍ୟ କେତୋଟି ସମୀକ୍ଷା କରାଯିବାପାଇଁ ଆସିଥିଲା ।

ସାହିତ୍ୟିକ ନନ୍ଦକିଶୋର ସେସବୁର ଉପଯୁକ୍ତ ସମୀକ୍ଷା କରିବା ପରେ ପରେ ସରକାରଙ୍କୁ ଗୁପ୍ତ ରିପୋର୍ଟରେ ଲେଖିଥିଲେ ଯେ ଶ୍ରୀଯୁକ୍ତ ପାଣି ଓଡ଼ିଆ ଯାତ୍ରା ସାହିତ୍ୟର ଆମୂଳଚୂଳ ପରିବର୍ତ୍ତନ କରି ଏକ ନୂତନ ଦୃଷ୍ଟିକୋଣରୁ ଉପସ୍ଥାପନା କରିଥିବା ହେତୁ ଓ ସେସବୁ ଅତି ଜନପ୍ରିୟ ହୋଇପାରୁଥିବା ହେତୁ ସରକାରଙ୍କ ତରଫରୁ ତାହାଙ୍କୁ ରାୟ ସାହେବ ଉପାଧି ଦିଆଯିବା ଉଚିତ ,

କିନ୍ତୁ ନନ୍ଦକିଶୋରଙ୍କ ସୁପାରିଶ କାର୍ଯ୍ୟକାରୀ ହୋଇପାରି ନ ଥିଲି । ତତ୍‌କାଳୀନ ପୋଲିସ ସାହେବ ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଥିଲେ ଯେ, ବୈଷ୍ଣବ ପାଣି ପ୍ରକୃତରେ ଇଂରେଜ ସରକାରଙ୍କ ସପକ୍ଷରେ ନୁହନ୍ତି । ଅନେକ ସମୟରେ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ସଂଗୀତ ରଚନା କରୁଥିଲେ ବୋଲି ପୋଲିସ ଅଫିସରଙ୍କ ରିପୋର୍ଟକୁ ଗୁରୁତ୍ୱ ଦେଇଥିଲେ ଇଂରେଜ ସରକାର ।

ପୁରୀ ଜିଲ୍ଲା ସ୍କୁଲ ସମୂହର ଇନସପେକ୍ଟର ଥିବା ସମୟରେ ବିହାର ଓଡ଼ିଶା ଗଭର୍ଣ୍ଣର ସତ୍ୟେନ୍ଦ୍ର ପ୍ରସନ୍ନ ସିହ୍ନା ଏକ ସରକାରୀ ଗସ୍ତରେ ଓଡ଼ିଶା ଆସିଥିଲେ । ସେ ଥିଲି ୧୯୨୨ ମସିହା ଅପ୍ରେଲ୍ ମାସ । ଓଡ଼ିଶା ଆସି ରହିଥିଲେ ପୁରୀରେ । ପ୍ରତିଦିନ ଓଡ଼ିଶାର ସ୍ଥିର ପାଞ୍ଚଜଣ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସହ ସାକ୍ଷାତ କରୁଥିଲେ ଓ ବିଭିନ୍ନ ବିଷୟରେ ଆଲୋଚନା କରୁଥିଲେ । ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ସମୟ ସୀମା ଧାର୍ଯ୍ୟ କରାଯାଇଥିଲି ମାତ୍ର ଦଶମିନିଟ୍ । ଦିନକର ଘଟଣା, ସେଦିନ ଯେଉଁମାନଙ୍କୁ ସାକ୍ଷାତ ଦେବାପାଇଁ ଲର୍ଡ଼ ସିହ୍ନାଙ୍କର ସ୍ଥିର ହୋଇଥିଲି ପୁରୀ ଜିଲ୍ଲା ସ୍କୁଲସମୂହର ପରିଦର୍ଶକ ନନ୍ଦକିଶୋର ଓ ଜଗନ୍ନାଥ ମନ୍ଦିରର ପରିଚାଳକ ଅବସରପ୍ରାପ୍ତ ଜିଲ୍ଲା ମାଜିଷ୍ଟ୍ରେଟ୍ ବାଳମୁକୁନ୍ଦ କାନୁନ୍‌ଗୋ । ପ୍ରଥମେ ଡକରା ପାଇଥିଲେ ନନ୍ଦକିଶୋର, ଉଭୟଙ୍କ ମଧ୍ୟରେ ଆଲୋଚନା ହୋଇଥିଲି ଓଡ଼ିଶାରେ ପ୍ରଚଳିତ ଶିକ୍ଷାପଦ୍ଧତି ବିଷୟରେ ।

ସେତେବେଳେ ଓଡ଼ିଶାର ପୁରାତନ ପରଂପରାକୁ ତ୍ୟାଗ କରାଯାଇ ନୂତନ ସିଲବସ୍ କରାଯାଇଥିଲି । ଇଂରେଜ ସରକାରଙ୍କ ଉଦ୍ଦେଶ୍ୟ ଥିଲି କେବଳ ଗୁଡ଼ାଏ କିରାଣୀ ଦେଶରେ ସୃଷ୍ଟି

କରିବା । ସେଥିପାଇଁ ପାରମ୍ପରିକ ସ୍ତରର ଆମୂଳ ପରିବର୍ତ୍ତନ କରି କେବଳ ଇଂରେଜ ପଦ୍ଧତିରେ ଶିକ୍ଷାଦାନ ଦେବାକୁ ନିଷ୍ପତ୍ତି କରିଥିଲେ । ଲର୍ଡ ସିହ୍ନା ଜାଣିବାକୁ ଚାହିଁଥିଲେ ଜନସାଧାରଣଙ୍କର ସେଥିପ୍ରତି ଆଗ୍ରହ ଥିଲା କି ନା ?

ନନ୍ଦକିଶୋର ନୂତନ ଶିକ୍ଷାପଦ୍ଧତି ଲୋକମାନଙ୍କର କପରି ଓ କାହିଁକି ପ୍ରିୟ ହୋଇପାରୁନ ସେ ପ୍ରସଙ୍ଗରେ ଆଲୋଚନା କରି ନିଜର ସ୍ୱାଧୀନ ମତବ୍ୟକ୍ତ କରିଥିଲେ । ପୂର୍ବତନ ପରମ୍ପରାପୁଷ୍ଟ ଶିକ୍ଷାଦାନ ପଦ୍ଧତିକୁ ସମ୍ପୂର୍ଣ୍ଣରୂପେ ବାଦ୍ ଦେଇଦେବାର ପରିଣାମ ହିଁ ସମ୍ପୂର୍ଣ୍ଣ ନୂତନ ଶିକ୍ଷାପଦ୍ଧତି ପ୍ରତି ଲୋକଙ୍କ ଅନାଗ୍ରହ ଓ ଅନାଦର । ଓଡ଼ିଶାର ପୂର୍ବତନ କବିଙ୍କ ରଚନାବଳୀରୁ କିଛି କିଛି ନୂତନ ସିଲାବସ୍‌ରେ ଯୋଗ କରିଯାଇ ଦେଶ ପ୍ରତି, ଜାତି ପ୍ରତି ମମତା ବୃଦ୍ଧି କରାଯିବା ଉଚିତ ପିଲାମାନଙ୍କ ମନରେ । ତତ୍‌ସହିତ କିଣ୍ଡରଗାର୍ଟେନ ପଦ୍ଧତିର ମଧ୍ୟ ଶିକ୍ଷା ଦିଆଯିବା ଉଚିତ । ଉଭୟ ଧାରାର ସମ୍ମିଶ୍ରଣ ନିଶ୍ଚିତଭାବେ ଜନପ୍ରିୟ ହୋଇ ପାରିବବୋଲି ଦୃଢ଼ମତ ଦେଇଥିଲେ ନନ୍ଦକିଶୋର ।

ଲର୍ଡ଼ ସିହ୍ନା ବ୍ରିଟିଶ୍ ସରକାରଙ୍କ ଅଧିନରେ ଚାକିରି କରୁଥିଲେ ମଧ୍ୟ ଜାତୀୟ ଚିନ୍ତାସମ୍ପନ୍ନ ଥିଲେ । ତେଣୁ ଜାତୀୟ କବିମାନଙ୍କ ରଚନାବଳୀ, ସେମାନଙ୍କ ଜୀବନୀ ଇତ୍ୟାଦି ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ହୋଇଥିଲା ତା ପରଠାରୁ ।

## ସରକାରଙ୍କ ଉପାଧି

୧୯୨୪ ମସିହାରେ ଇଂରେଜ ସରକାର କବି ନନ୍ଦକିଶୋରଙ୍କୁ "ରାୟ ସାହେବ" ଉପାଧିରେ ଭୂଷିତ କରିଥିଲେ । ତାହା ଦିଆଯାଇଥିଲା କବିଙ୍କ କର୍ମକୁଶଳତା ଯୋଗୁ । ତତ୍ପୂର୍ବରୁ ଇଂରେଜ ସରକାରଙ୍କଠାରୁ ଉଚ୍ଚ ଉପାଧିମାନ ପାଇଥିଲେ ।

ପୁରୀରେ ଅବସ୍ଥାନ କାଳରେ ନନ୍ଦକିଶୋର ଥରେ ନିଜ ଗ୍ରାମକୁ ଯାଇଥିଲେ । ଓଡ଼ିଶାର ପ୍ରଖ୍ୟାତନାମା ନାରୀକବି କୁନ୍ତଳା କୁମାରୀ ତାଙ୍କର ଅତିଥି ହୋଇଥିଲେ ପ୍ରାୟ ଏକମାସ ପାଇଁ । ଉଭୟ ନାରୀ, କବିଙ୍କ ପଲ୍ଲୀର ପ୍ରାକୃତିକ ଶୋଭାସମ୍ପଦରେ ଆତ୍ମହରା ହୋଇ ଉଠିଥିଲେ । ନନ୍ଦକିଶୋର ବୟସରେ କୁନ୍ତଳାକୁମାରୀଙ୍କଠାରୁ ବହୁତ ବଡ଼ ଥିଲେ । ତେଣୁ ଉଭୟଙ୍କ ଭିତରେ ପିତା ଓ କନ୍ୟାର ସମ୍ପର୍କ ସ୍ଥାପିତ ହୋଇ ପାରିଥିଲା । କୁସୁପୁର ସେମାନଙ୍କୁ ମନେ ହୋଇଥିଲା ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ଏକ ସାମ୍ରାଜ୍ୟ । କୁନ୍ତଳା କୁମାରୀ ସେଠାରେ ରଚନା କରିଥିବା ଖଣ୍ଡିଏ କବିତା ଉପହାର ଦେଇଥିଲେ ପଲ୍ଲୀକବିଙ୍କୁ । କବିଙ୍କ ଜନ୍ମଭୂମି ଓ ଅତିଥି ଭାଗ କବିତା-ଗୁଚ୍ଛରେ ସନ୍ନିବେଶିତ "ନାରୀକବି କୁନ୍ତଳାକୁମାରୀ" ପଲ୍ଲୀକବିଙ୍କ ପ୍ରତ୍ୟୁପହାର କବିତା ।

ପୁରୀରେ ଦୀର୍ଘ ଛଅବର୍ଷ କର୍ମମୟ ଜୀବନ ଅତିବାହିତ କରିବା ପରେ ନନ୍ଦକିଶୋର ବଦଳି ହୋଇଥିଲେ ଏକଦା ତାଙ୍କର କର୍ମସ୍ଥଳୀ ଥିବା ବାଲେଶ୍ୱରକୁ ପୁଣି ସେହି ଜିଲ୍ଲାସ୍କୁଲର ପ୍ରଧାନ

ଶିକ୍ଷକ ଭାବେ । କିନ୍ତୁ ପୂର୍ବ ଥରର ତେଜ ତାଙ୍କର ନ ଥିଲା । ବୟସର ପ୍ରବଳ ଘୂର୍ଣ୍ଣିପାକରେ ପେଷି ହୋଇ ଯାଇଥିଲେ ସେ । ଏଣେ ବାର୍ଦ୍ଧକ୍ୟ ଯୋଗୁଁ ବହୁମୂତ୍ର ରୋଗରେ ଆକ୍ରାନ୍ତ ହୋଇ କଷ୍ଟ ପାଉଥିଲେ ମଧ୍ୟ । ଦୃଷ୍ଟିଶକ୍ତି କ୍ରମଶଃ କ୍ଷୀଣ ହୋଇ ଯାଇଥିଲା ।

ତଥାପି ସରକାରୀ ଆଦେଶକୁ ଅମାନ୍ୟ କରିବା ଶକ୍ତି ସଂଗଠିତ କରିପାରି ନ ଥିଲେ । ଯାଇଥିଲେ ବାଲେଶ୍ୱର । ଏଥର ଆଉ ଫକୀରମୋହନ ମଧ୍ୟ ସେଠାରେ ନ ଥିଲେ । ଉପଯୁକ୍ତ ସାହିତ୍ୟିକ ସଙ୍ଗୀ ମଧ୍ୟ ପାଇ ନ ଥିଲେ ସମୟ ଅତିବାହିତ କରିବା ପାଇଁ । ଜୀବନର କ୍ଳାନ୍ତି ସହିତ ମାନସିକ କ୍ଳାନ୍ତି ମଧ୍ୟ ଅନୁଭବ କରିଥିଲେ ପଲ୍ଲୀକବି ଏଥର ବାଲେଶ୍ୱରରେ ।

ପୁଣି ସେଠାକାର ଜଳବାୟୁ ସହ ଏଥର ନିଜକୁ ଖାପ ଖୁଆଇ ପାରି ନ ଥିଲେ ନନ୍ଦକିଶୋର । ତେଣୁ ମନ ଗୋଟିଏ ଦୀର୍ଘ ଅତିବାହିତ ହେବା ପରେ ପରେ ଦୀର୍ଘ ଛୁଟି ନେବାପାଇଁ ସ୍ଥିର କରିଥିଲେ ସେ । ବରଂ ସେଥିପାଇଁ ସେ ବାଧ୍ୟ ହୋଇଥିଲେ ।

୧୯୨୬ ମସିହାରେ ସ୍ୱାସ୍ଥ୍ୟହାନି ବଶତଃ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରିଥିଲେ ।

# କୁସୁପୁରର ମମତା

ଅବସର ଗ୍ରହଣ ପରେ ପରେ କୁସୁପୁରର ପ୍ରାକୃତିକ ସୌନ୍ଦର୍ଯ୍ୟମୟ ପରିବେଶ ତାହାଙ୍କୁ ହାତଠାରି ନିମନ୍ତ୍ରଣ ଜଣାଇଥିଲା । ସେ ନୈସର୍ଗିକ ଆନନ୍ଦର ପରଜନ୍ଧିଆ ନିମନ୍ତ୍ରଣକୁ ଉପେକ୍ଷା କରିବାର ଶକ୍ତି ନ ଥିଲା ନନ୍ଦକିଶୋରଙ୍କର । ସେ ମନେ କରିଥିଲେ ପ୍ରାକୃତିକ ପରିବେଶପୂର୍ଣ୍ଣ ନିଜ ଗ୍ରାମରେ ବିଶ୍ରାମ ନେଲେ ହୁଏତ ଶରୀର ସୁସ୍ଥ ହୋଇ ଉଠିବ, ଶକ୍ତି ସଂଚୟ କରିପାରିବେ ବାର୍ଦ୍ଧକ୍ୟରେ ଯୌବନର ନୂତନ ପ୍ରସ୍ତୁପାଇଁ ।

କିନ୍ତୁ ତାଙ୍କର ଆକାଂକ୍ଷା ଫଳବତୀ ହୋଇପାରି ନ ଥିଲା । ସ୍ୱାସ୍ଥ୍ୟ ଲାଭ କରିପାରି ନ ଥିଲେ । ତେଣେ ପୂର୍ବ ଜୀବନର ପରିକଳ୍ପନା ଅନୁଯାୟୀ ସାହିତ୍ୟସାଧନା ମଧ୍ୟ କରିପାରି ନ ଥିଲେ । କଳ୍ପନା ତାଙ୍କର ଫଳବତୀ ହୋଇପାରି ନ ଥିଲା । କ୍ରମେ କ୍ରମେ ଅଧିକରୁ ଅଧିକ ଦୁର୍ବଳ ହୋଇ ପଡ଼ିଥିଲା ଦୃଷ୍ଟିଶକ୍ତି । ତେଣୁ ଯାହା ବି ଚିନ୍ତା କରୁଥିଲେ ସାହିତ୍ୟ ସୃଷ୍ଟି କରିବାପାଇଁ ତାହା ମଧ୍ୟ ସମ୍ଭବ ହୋଇପାରୁ ନ ଥିଲା ।

ନିଜେ କିଛି ରଚନା କରିବା ପ୍ରୟାସ ବ୍ୟାହତ ହେଉଥିଲା । କିନ୍ତୁ ତାଙ୍କ ହାତପାହାନ୍ତାରେ କାଗଜ କଲମ ରଖି ଦିଆଗଲେ ଅନେକ ସମୟରେ ନିର୍ଭୁଲଭାବେ କିଛି କିଛି ଲେଖି ପାରୁଥିଲେ । ନିର୍ଭୁଲଭାବେ କିଛିଟା ସୃଷ୍ଟି କରି ପାରୁଥିଲେ ।

ତେବେ ଅଧିକାଂଶ ସମୟରେ କବିଙ୍କ କନ୍ୟା ଶ୍ରୀମତୀ ସରସ୍ୱତୀ କବିଙ୍କ ପାଇଁ ଅନେକଟା ସାହାଯ୍ୟ କରୁଥିଲେ । ଅନେକ ସମୟରେ

କବି ମୁହେଁ ମୁହେଁ ଡାକଯାଉଥିଲେ ଓ କବି କନ୍ୟା ପିତାଙ୍କୁ ସାହାଯ୍ୟ କରିବାପାଇଁ ତତ୍ପର ହୋଇ ଉଠୁଥିଲେ । ପ୍ରଭାତ ସଙ୍ଗୀତ ଓ ସଂଧ୍ୟା ସଙ୍ଗୀତର କେତେକ କବିତା ଶ୍ରୀମତୀ ସରସ୍ୱତୀଙ୍କଦ୍ୱାରା ଶ୍ରୁତିଲିଖନ ପ୍ରଣାଳୀରେ ଲିଖିତ ହୋଇଥିଲା ।

ଦିନକୁଦିନ କବିଙ୍କ ସ୍ୱାସ୍ଥ୍ୟ ଅବନତ ହେବାରେ ହିଁ ଲାଗିଥିଲା । ପଲ୍ଲୀର ପ୍ରାକୃତିକ ଶୋଭାସମ୍ପଦ ପଲ୍ଲୀକବିଙ୍କ ସ୍ୱାସ୍ଥ୍ୟ ଉଦ୍ଧାର କରି ପାରିନଥିଲା । ଅବସ୍ଥାର ମନ୍ଦଗତି, କବିଙ୍କ ପ୍ରିୟସ୍ୱଜନମାନଙ୍କୁ ବିଶେଷ ଆଘାତ ଦେଇଥିଲା । ତେଣୁ ସେମାନେ ସ୍ଥିର କରିଥିଲେ କଟକ ନେଇ କବିଙ୍କୁ ଡାକ୍ତରୀ ଚିକିତ୍ସା କରାଇବେ ।

ସେଥିପାଇଁ ସମସ୍ତ ପ୍ରସ୍ତୁତ ହୋଇ ଯାଉଥିଲା । କିନ୍ତୁ ନନ୍ଦକିଶୋର ସେଥିପାଇଁ କୌଣସିମତେ ପ୍ରସ୍ତୁତ ନ ଥିଲେ । ସେ ଚାହୁଁଥିଲେ ପ୍ରକୃତିର ପ୍ରାକୃତିକ କୋଳରେ ରହି ଅନ୍ତତଃ ମାନସିକ ଶାନ୍ତି ଲାଭ କରିବେ । ପରିବାରବର୍ଗଙ୍କୁ ସେ ସବୁକଥା ସ୍ଥିର କରିପାରି ନଥିଲା । ତେଣୁ ସେମାନେ ସେମାନଙ୍କ ନିଷ୍ପତ୍ତିରେ ଅଟଳ ରହିଥିଲେ । ସେତେବେଳେ ଆଜିକାଲି ପରି ଅନେକଟା ରାସ୍ତା, ଯାନବାହନର ସୁବିଧା ନ ଥିଲା । ତେଣୁ କବିଙ୍କୁ କଟକ ନେବାପାଇଁ ଏକ ସବାରୀର ବ୍ୟବସ୍ଥା କରାଯାଇଥିଲା । ସବାରୀରେ ନନ୍ଦକିଶୋରଙ୍କୁ ଉଠାଇବାବେଳେ ଆକୁଳ କାକୁତି କରିଥିଲେ— "Let me die peacefully at my native village" ନିଜ ଜନ୍ମଭୂମିରେ ନିଜର ଦେହାବସାନ କରିବା ଲାଗି ମିନତି କରିଥିଲେ ତାଙ୍କର ଆତ୍ମୀୟସ୍ୱଜନମାନଙ୍କୁ ।

କିନ୍ତୁ ତାଙ୍କର ପରିବାରବର୍ଗ ଚାହୁଁଥିଲେ ବୃଦ୍ଧାବସ୍ଥାରେ ହେଲେ ମଧ୍ୟ ସେ ଅଧିକ କାଳ ବଞ୍ଚି ରହନ୍ତୁ । ପାରିବାରିକ ଆନନ୍ଦ

ଦେଉଥାଆନ୍ତୁ । ସେଥିପାଇଁ ଚିକିତ୍ସା ଦରକାର । ସ୍ୱାସ୍ଥ୍ୟର ଉନ୍ନତି ହେବା ଦରକାର ।

କଟକ ନିଆଯାଇଥିଲା ପଲ୍ଲୀକବିଙ୍କୁ । ସେଠାରେ ସମସ୍ତ ପ୍ରକାର ଚିକିତ୍ସାର ଆୟୋଜନ କରାଯାଇଥିଲା । ତଥାପି କୌଣସି ଚିକିତ୍ସା ଫଳପ୍ରଦ ହୋଇ ନ ଥିଲା । ସେ ବେଳକୁ ବେଳ ସ୍ୱାସ୍ଥ୍ୟର ଅବନତି ହିଁ ହେବା ସାର ହୋଇଥିଲା । ବହୁମୂତ୍ର ଯୋଗୁ ସେ ବେଳକୁବେଳ ଦୁର୍ବଳ ହୋଇ ପଡ଼ୁଥିଲେ । କ୍ରମେ ଅବସ୍ଥା ଏତେ-ଦୂରକୁ ଯାଇଥିଲା ଯେ, ସେ ଶଯ୍ୟାଶାୟୀ ହୋଇ ପଡ଼ିଥିଲେ ।

ନନ୍ଦକିଶୋରଙ୍କ ହୃଦ୍‌ବୋଧ ଅନୁଭବ ହୋଇଥିଲା ଯେ, ସେ ଆଉ ଅଧିକ କାଳ ବଞ୍ଚି ରହିପାରିବେ ନାହିଁ । ସେ ଶଯ୍ୟା ହିଁ ଏବେ ତାହାଙ୍କ ଶେଷ ନିଶ୍ୱାସ ଟାଣି ନେଇଯିବ ।

ତାଙ୍କର ଅନୁଭବ ହିଁ ସତ୍ୟ ହୋଇଥିଲା ।

୧୯୨୮ ମସିହା ଜୁଲାଇ ମାସ ପନ୍ଦର ତାରିଖ ଭୋର ଘଣ୍ଟା-ବେଳେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ପଲ୍ଲୀକବି ନନ୍ଦକିଶୋର । ସେତେବେଳକୁ ତାଙ୍କର ବୟସ ହୋଇଥିଲା ମାତ୍ର ୫୨ ବର୍ଷ ।

କବିଙ୍କ ମୃତ୍ୟୁ ସମ୍ବାଦ ପାଇବା ପରେ ପରେ ସହରରେ ଏକ ଶୂନ୍ୟତା ଖେଳିଯାଇଥିଲା । ଓଡ଼ିଶାର ଅନେକ ବରେଣ୍ୟ କବି, ଲେଖକ, ଗଣ୍ୟମାନ୍ୟ ବ୍ୟକ୍ତି ତଥା ଗୁଣୀ ଶବଶୋଭାଯାତ୍ରାରେ ଯୋଗ ଦେଇଥିଲେ, ଶେଷ ସମ୍ମାନ ପ୍ରଦର୍ଶନ କରିଥିଲେ । ଶବଶୋଭାଯାତ୍ରା ଶେଷ ହୋଇଥିଲା ସତୀଚଉରା ନିକଟରେ ଯେଉଁଠି ପଲ୍ଲୀକବିଙ୍କ ନରଦେହକୁ ମାଟିରେ ମିଶାଇ ଦିଆଯାଇଥିଲା ।



ଏହି ଲେଖକଙ୍କର :

| | |
|---|---|
| କବିସୂର୍ଯ୍ୟ ବଳଦେବ | ଟ ୨·୫୦ |
| ପଲ୍ଲୀକବି ନନ୍ଦକିଶୋର | ଟ ୧·୭୫ |
| ସ୍ୱଭାବକବି ଗଙ୍ଗାଧର | ଟ ୨·୦୦ |
| ଉଦ୍‌ବେଳନ | ଟ ୭·୫୦ |

( ଏକାଙ୍କିକା ସଂକଳନ )

ମୁଦ୍ରଣ—ନଉ ପ୍ରେସ୍, କାଜି ବଜାର, କଟକ—୧

